# ସୂଚୀପତ୍ର

# ବାଲ୍ମୀକି

ସଂସ୍କୃତ ଭାଷାରେ ଲେଖାଥିବା ରାମାୟଣ ଓ ମହାଭାରତ ଭାରତରେ ଦୁଇ ଇତିହାସ କାବ୍ୟ । ଏହା ଅପେକ୍ଷା ପୁରୁଣା ଗ୍ରନ୍ଥ କାବ୍ୟ ସଂସ୍କୃତ ଭାଷାରେ ନାହିଁ । ବାଲ୍ମୀକି ଋଷି ରାମାୟଣ ରଚନା କରିଥିଲେ ।

ପ୍ରାଚୀନ କାଳରେ ରତ୍ନାକର ବୋଲି ଜଣେ ଲୋକ ଥିଲେ । ସେ ଜୀବନରେ ଦସ୍ୟୁବୃତ୍ତି କରି କୁଟୁମ୍ବ ପୋଷୁଥିଲେ । ସେ ବନରେ ଲୁଚି ରହି ପଥିକମାନଙ୍କୁ ହତ୍ୟା କରି ସେମାନଙ୍କର ସର୍ବସ୍ୱ ଲୁଣ୍ଠନ କରୁଥିଲେ । ଏଥିରେ ତାହାଙ୍କର ପରିବାର ପୋଷି ହେଉଥିଲେ ।

ଥରେ ନାରଦ ବନରେ ଏକାକୀ ଯାଉଥିଲେ । ତାଙ୍କୁ ଦେଖି ଦସ୍ୟୁ ରତ୍ନାକର ଆକ୍ରମଣ କଲେ । ନାରଦ ରକ୍ଷାର ଉପାୟ ନ ଦେଖି ରତ୍ନାକରଙ୍କୁ କହିଲେ, "ବାପ ! ତୁମେ ନରହତ୍ୟା କରୁଛ, ପଥିକମାନଙ୍କର ସର୍ବସ୍ୱ ଲୁଣ୍ଠନ କରୁଛ । ଏହାଠୁଁ ବଳି ପାପ ନାହିଁ ।"

ଅଗ୍ନିଦୋ ଗରଦଶ୍ଚୈବ ଶସ୍ତ୍ରପାଣିର୍ଧନାପହଃ ।
ଭୂମିଦାରାପହାରୀ ଚ ଷଡ଼େତେ ଆତତାୟିନଃ ॥

"ଯେଉଁମାନେ ଘର ପୋଡ଼ନ୍ତି, ଗରଳ ଦିଅନ୍ତି, ମନୁଷ୍ୟ ହତ୍ୟା କରନ୍ତି, ପରଧନ ଅପହରଣ କରନ୍ତି, ପରଜମି ଓ ପରସ୍ତ୍ରୀ ବଳପୂର୍ବକ ନେଇଯାନ୍ତି, ସେମାନଙ୍କୁ ଆତତାୟୀ କୁହାଯାଏ । ଆତତାୟୀ ନରକରେ ପଡ଼େ । ତୁମେ ଯେଉଁ ପାପ କରୁଛ, ସେଥିଲାଗି ନରକରେ ପଡ଼ିବ ।"

ରତ୍ନାକର ବିପନ୍ନ ହେଲେ । ସେ କିଛି କାଳ ମନରେ କ'ଣ ଭାବି ଉତ୍ତର କଲେ, "ବ୍ରାହ୍ମଣ ! ମୋର ଏହା ଜୀବିକା । ମୁଁ ଏହା ନକଲେ, ମୋର ପିତା, ମାତା, ସ୍ତ୍ରୀ, ପୁତ୍ର ସମସ୍ତେ ଭୋକ ଉପାସରେ ମରିବେ । ମୁଁ ସେମାନଙ୍କ ଲାଗି ଏ ପାପ କରୁଛି । ମୁଁ କାହିଁକି ନରକରେ ପଡ଼ିବି ? ସେମାନେ କାହିଁକି ପାପର ଫଳ ଭୋଗିବେ ନାହିଁ ?"

ନାରଦ କହିଲେ, "ତେବେ ତୁମେ ଯାଇ ଘରୁ ବୁଝିଆସ, ପାପ ପାଇଁ କିଏ କିଏ ଭାଗୀ ହେବେ ।"

ନାରଦ୍ ପଳାଇଯିବେ ବୋଲି ଆଶଙ୍କା କରି ରତ୍ନାକର ଗୋଟିଏ ଗଛର ଗଣ୍ଡିରେ ତାଙ୍କୁ ବାନ୍ଧି ଦେଲେ । ସେ ଘରକୁ ଯାଇ ଯେତେବେଳେ ଜଣ ଜଣ କରି କେଉଁମାନେ ପାପଭାଗୀ ହେବାକୁ ରାଜି ହେବେ ବୋଲି ପଚାରିଲେ, ପ୍ରତ୍ୟେକେ ଉତ୍ତର କଲେ, "ଆମକୁ ପୋଷିବା ତୁମର କାମ । ଆମେ ତ ତୁମକୁ ମନୁଷ୍ୟ ମାରି, ଲୁଣ୍ଠନ କରି ଆମକୁ ପୋଷିବାକୁ କହିନାହୁଁ; ଆମେ କାହିଁକି ପାପରେ ଭାଗୀ ହେବୁ ?"

ରତ୍ନାକର ହତାଶ ହେଲେ । ସେ ନରକରେ ପଡ଼ିବେ ବୋଲି ତାଙ୍କ ଦେହର ଥରିଉଠିଲା । ତାଙ୍କର ଅନୁତାପ ଓ ଚେତନା ଉଦୟ ହେଲା । ସେ ନାରଦଙ୍କ ନିକଟକୁ ଫେରିଯାଇ ତାଙ୍କୁ ବନ୍ଧନରୁ ମୁକ୍ତ କଲେ । ତାଙ୍କ ଚରଣତଳେ ପଡ଼ି କହିଲେ, "ପ୍ରଭୋ ! ମୋତେ ଏହି ନରହତ୍ୟା ଓ ଲୁଣ୍ଠନ ପାପରୁ ମୁକ୍ତି ପାଇବାର ବାଟ ବତାଇ ଦିଅନ୍ତୁ ।"

ନାରଦ ଉତ୍ତରରେ କହିଲେ, "ବତ୍ସ ! ତୁମେ ପବିତ୍ର ରାମ ନାମ ଜପ କର । ସେଥିରେ ତୁମର ପାପ କଟିଯିବ ।"



ରତ୍ନାକର ଦସ୍ୟୁବୃତ୍ତି ଛାଡିଦେଲେ । ବନର ଗୋଟିଏ ଗଛମୂଳରେ ବସି ନିବିଷ୍ଟ ଚିତ୍ତରେ ବହୁଦିନ ରାମନାମ ଜପ କଲେ । ତାଙ୍କ ଦେହକୁ

ଉଇହୁଙ୍କା ଢାଙ୍କିଦେଲା । ରତ୍ନାକର ତପସ୍ୟାରେ ସିଦ୍ଧିଲାଭ କରି ଉଇହୁଙ୍କା ବା ବାଲ୍ମୀକରୁ ଉଠିଲେ ଏବଂ ସେହିଦିନରୁ ନିଜକୁ ବାଲ୍ମୀକି ବୋଲି ପରିଚିତ କଲେ ।

ବାଲ୍ମୀକି ତମସା ନଦୀତୀରରେ ଏକ ଆଶ୍ରମ ଠେନ କରି ସେଠାରେ ଧର୍ମ ଓ ଶାସ୍ତ୍ରଚର୍ଚ୍ଚା କଲେ । ଅନେକ ଲୋକ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ ।

ଦିନେ ବାଲ୍ମୀକି ତମସାକୁ ସ୍ନାନାର୍ଥ ଯାଇଥିଲେ । ସେଠାରେ ଦୁଇଟି କ୍ରୌଞ୍ଚ ବା ବକ ପକ୍ଷୀ ପରସ୍ପର ପ୍ରୀତିରେ ପରମ ସୁଖରେ ବାସ କରୁଥିଲେ । କୌଣସି ବ୍ୟାଧ ବା ନିଷାଦ ଶର ନିକ୍ଷେପ କରି ବକମିଥୁନ ମଧ୍ୟରୁ ପୁଂବକକୁ ବଧ କଲା । ବକଟି ଛଟପଟ ହୋଇ ଆସି ଋଷିଙ୍କ ଚରଣତଳେ ପଡ଼ିଗଲା । ଏଥିରେ ଋଷିଙ୍କ ପ୍ରାଣ ବିକଳରେ କାନ୍ଦିଉଠିଲା । ସେ ବ୍ୟାଧକୁ ଯେଉଁ ଶାପ ଦେଲେ ତାହା ଛନ୍ଦୋବଦ୍ଧ କବିତାରୂପେ ତାଙ୍କ ମୁହଁରୁ ସହସା ବାହାରି ପଡ଼ିଲା ।

ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀ ସମା ।
ଯତ୍‌କ୍ରୌଞ୍ଚମିଥୁନାଦେକଂ ଅବଧୀଃ କାମମୋହିତଂ ।

(ହେ ନିଷାଦ, ତୁମେ କାମମୁଗ୍ଧ କ୍ରୌଞ୍ଚଯୁଗଳରୁ ଗୋଟାକୁ ବଧ କରିଛ । ତୁମ ପ୍ରତିଷ୍ଠା ଚିରକାଳ ବ୍ୟାହତ ରହୁ ।)

କଥିତ ଅଛି, ଏହା ପରେ ବ୍ରହ୍ମା ଶିଷ୍ୟଗଣ, ପରିବୃତ ଋଷି ବାଲ୍ମୀକିଙ୍କ ନିକଟରେ ଉପଗତ ହୋଇ, ତାଙ୍କୁ ଆଦିକବି ରୂପେ ଅଭିବାଦନ କଲେ ଏବଂ ଛନ୍ଦୋବଦ୍ଧ ରାମାୟଣ ବା ଶ୍ରୀରାମଚନ୍ଦ୍ରଙ୍କ ଚରିତ ରଚନା କରିବାକୁ ଆଦେଶ ଦେଲେ । ନିଷ୍ଠୁର ଦସ୍ୟୁ ରତ୍ନାକର ମହାକବି ବାଲ୍ମୀକିରୂପେ ଜଗତରେ ବିଖ୍ୟାତ ହେଲେ ।

ଭାରତବାସୀ ବିଶ୍ୱାସ କରନ୍ତି, ବାଲ୍ମୀକି ଭାରତର ଆଦିକବି । ରାମାୟଣ ଭାରତର ପ୍ରଥମ ଛନ୍ଦୋମୟ କାବ୍ୟ । ଏହାର ଅର୍ଥ ନୁହେଁ ଯେ, ରାମାୟଣର ପୂର୍ବ ଭାରତରେ ଛନ୍ଦୋମୟ ରଚନା ନଥିଲା । ବେଦ ରଚନା କାଳରୁ ଛନ୍ଦ ରହିଛି ଏବଂ ଆରଣ୍ୟକ ଓ ଉପନିଷଦରେ ତହିଁର କ୍ରମିକ ଶ୍ରୀବୃଦ୍ଧି ହୋଇଛି । ସେଥିପାଇଁ କହନ୍ତି ଛନ୍ଦର ବୀଜ ହେଉଛି ବେଦ, ତହିଁର ଅଙ୍କୁର ହେଉଛି ଆରଣ୍ୟକ ଏବଂ ଶାଖା ହେଉଛି ଉପନିଷଦ୍ ।

କିନ୍ତୁ ବେଦର ଛନ୍ଦ ଭିନ୍ନ । ସେଥିରେ ସାତଟି ଛନ୍ଦ ଅଛି । ଗାୟତ୍ରୀ, ଉଷ୍ଣିକ୍, ଅନୁଷ୍ଟୁପ୍, ବୃହତୀ, ପଂକ୍ତି, ତ୍ରିଷ୍ଟୁଭ୍ ଓ ଜଗତୀ । ଏହି ସାତ ଛନ୍ଦକୁ ଦୈବିକ ଛନ୍ଦ କହନ୍ତି, ଅର୍ଥାତ୍ ଦେବତାମାନେ ଏହି ଛନ୍ଦ ରଚନା କରିଥିଲେ । ବେଦର ଭାଷା ଓ ବ୍ୟାକରଣ ମଧ୍ୟ ଅଲଗା । ବାଲ୍ମୀକି ଯେଉଁ ସଂସ୍କୃତ ଭାଷାରେ ରାମାୟଣ ଲେଖିଲେ, ଆମେମାନେ ତାହା ଏବେ ସହଜରେ ବୁଝିପାରୁଛୁଁ, କିନ୍ତୁ ବେଦର ସଂସ୍କୃତ ସହଜରେ ବୁଝି ହୁଏନାହିଁ । ରାମାୟଣର ଛନ୍ଦ ଆମଠାରେ ପରିଚିତ, ବେଦର ଛନ୍ଦ କଠିନ । ବୈଦିକ ଶ୍ଳୋକ ବୋଲିବାକୁ ଆମକୁ କଷ୍ଟ ଓ କଠିନ ହୁଏ । ରାମାୟଣର ଛନ୍ଦକୁ ଲୌକିକ ଛନ୍ଦ କହନ୍ତି ଏବଂ ବାଲ୍ମୀକି ଲୌକିକ ଛନ୍ଦର ସୃଷ୍ଟିକର୍ତ୍ତା ବୋଲି ପରିଚିତ । ରାମାୟଣର ପୂର୍ବେ ଲୌକିକ ଛନ୍ଦରେ କୌଣସି କାବ୍ୟ ଲେଖା ହୋଇଥିବା କଥା ଆମକୁ ଜଣାନାହିଁ । ଭାରତରେ ଊଣା ଅଧିକରେ ଦୁଇଶହ ଲୌକିକ ଛନ୍ଦ ଅଛି । ସେଥିଲାଗି ବାଲ୍ମୀକିଙ୍କୁ ଆଦିକବି ବୋଲି କହନ୍ତି ।

ବାଲ୍ମୀକିଙ୍କ ପୂର୍ବେ କେହି କାବ୍ୟ ସିନା ଲେଖି ନଥିଲେ, ଅନେକେ ଲୌକିକ ଛନ୍ଦରେ ଗ୍ରନ୍ଥମାନ ଲେଖିଥିଲେ । କିନ୍ତୁ ସେମାନଙ୍କୁ କବି କୁହାଯାଏ ନାହିଁ ।

ରାମାୟଣ ରଚନାର ବହୁକାଳ ପୂର୍ବେ ଭାରତରେ ଛନ୍ଦ ରଚନା ଥିଲା । ଋଗ୍‌ବେଦ, ସାମବେଦ ପ୍ରଭୃତି ରାମାୟଣର ହଜାର ହଜାର ବର୍ଷ ପୂର୍ବେ ରଚିତ । ସାମବେଦର ସଙ୍ଗୀତ ଶୁଣିବାକୁ ଯେପରି ମଧୁର ଓ ପ୍ରୀତିକର ରାମାୟଣର ଛନ୍ଦ ସେପରି ନୁହେଁ । ସମ୍ଭବତଃ ମନୁ ବାଲ୍ମୀକିଙ୍କ ପୂର୍ବେ ମନୁସଂହିତା ଗୀତରେ ଲେଖିଥିଲେ । ମନୁଙ୍କ କେତେକ ଶ୍ଳୋକ ରାମାୟଣରେ ଥିବାର ଦେଖାଯାଏ ।

ପୂର୍ବ କାଳରେ ଛାପାକଳ ନଥିଲା । ଲୋକେ ବଡ଼ କଷ୍ଟରେ ଭଲ ଭଲ ଗ୍ରନ୍ଥ ଓ ରଚନା ଆଦର୍ଶରୁ ନକଲ କରି ରଖୁଥିଲେ । ଯେଉଁ କାବ୍ୟ କବିତା ସେମାନେ ପସନ୍ଦ କରୁନଥିଲେ, ତାକୁ କେହି ପଚାରୁ ନଥିଲେ, ନକଲ କରି ରଖିବା ତ ଦୂରର କଥା । ସେଥିଲାଗି କେବଳ ରାମାୟଣ, ମହାଭାରତ, ରଘୁବଂଶ, କୁମାରସମ୍ଭବ, ଉତ୍ତର ରାମଚରିତ ପରି ଭଲ କାବ୍ୟମାନ ଲୋକେ ଯତ୍ନରେ ସମ୍ଭାଳି ରଖିବାରୁ ସେଗୁଡ଼ିକ ଏପର୍ଯ୍ୟନ୍ତ ବଞ୍ଚିଛି । କେତେ ଯେ କାବ୍ୟ ଓ ରଚନା ଉଇ ଖାଇଯାଇଛି, ନଷ୍ଟ

ବର୍ଷିରେ, ଘରପୋଡ଼ରେ ନଷ୍ଟ ହୋଇଛି, ଆମ ହାତକୁ ଆସିନାହିଁ, ତାହାର କଳନା ନାହିଁ । ଭକ୍ତି ନ ଥିଲେ, ଲେଖାର ନକଲ ଲୋକେ ଏତେ କଷ୍ଟରେ କରନ୍ତେ କାହିଁକି ?

ପ୍ରକୃତ କଥା କହିବାକୁ ଗଲେ, ରାମାୟଣ ରଚନା କରିବା ଚେଷ୍ଟା ବାଲ୍ମୀକି ପ୍ରଥମେ କରି ନଥିଲେ । ମହାଭାରତ ଶାନ୍ତିପର୍ବର ୫୭ ଅଧ୍ୟାୟରୁ ଜଣାଯାଏ, ଉଶନା ଭାର୍ଗବ ଋଷି ଏ "ଭାର୍ଗବ ରାମାୟଣ" ଲେଖିଥିଲେ । ସେହି ରାମାୟଣ ଭଲ କାବ୍ୟ ହୋଇ ନ ପାରିବାରୁ ସମାଜରେ ଆଦର ପାଇଲାନାହିଁ । ଉଶନା ଋଷି ଏ ରାଜଚରିତ ମଧ୍ୟ ଲେଖିଥିଲେ । ତାହାର ଗୋଟିଏ ଶ୍ଲୋକ ତାଙ୍କ ରାମାୟଣର ଗୋଟିଏ ଶ୍ଲୋକ ସଙ୍ଗେ ସମାନ ଥିଲା । ସେହି ଶ୍ଲୋକଟି ମହାଭାରତରେ ନଆଁ ହୋଇଥିବା ଜଣାପଡ଼େ । ସମ୍ଭବତଃ ଉଶନା ବାଲ୍ମୀକିଙ୍କ ଜଣେ ପୂର୍ବପୁରୁଷ ଥିଲେ ।

ଉଶନାଙ୍କ ପରେ ଚ୍ୟବନ ଭାର୍ଗବ ବୋଲି ବାଲ୍ମୀକିଙ୍କ ଆଉ ଜଣେ ପୂର୍ବପୁରୁଷ ରାମାୟଣ ରଚନା କରିବା ଉଦ୍ୟମ କରିଥିଲେ । ତାହା ମଧ୍ୟ ସମାଜରେ ପ୍ରତିଷ୍ଠା ଲାଭ କଲାନାହିଁ । ଏକଥା ଅଶ୍ୱଘୋଷଙ୍କ ଲିଖିତ 'ବୁଦ୍ଧଚରିତରୁ' ଜଣାଯାଏ ।

(ବାଲ୍ମୀକିନାଦଶ୍ଚ ସସର୍ଜ ପଦ୍ୟଂ
ଜଗ୍ରନ୍ଥଯନ୍ନ ଚ୍ୟବନୋ ମହର୍ଷିଃ ।)

ପୂର୍ବପୁରୁଷମାନେ ଯେଉଁ ଚେଷ୍ଟାରେ ବିଫଳ ହୋଇଥିଲେ, ଭାର୍ଗବ ବାଲ୍ମୀକି ତହିଁରେ ଅକ୍ଷୟ ଯଶ ଲାଭ କଲେ ।

ବାଲ୍ମୀକି ଭୃଗୁ ଋଷିଙ୍କ ଜଣେ ବଂଶଧର ଥିଲେ । ତାଙ୍କ ପୂର୍ବପୁରୁଷ ଏହି ଭୃଗୁ ଋଷି "ଭୃଗୁ ସଂହିତା" ନାମରେ ଏକ ଧର୍ମଗ୍ରନ୍ଥ (ବା ସାମାଜିକ ଆଇନଗ୍ରନ୍ଥ) ଲେଖିଛନ୍ତି । ତାହା ଏପର୍ଯ୍ୟନ୍ତ ଅଛି । ଏଥିରୁ ବୁଝାପଡ଼ିବ ଯେ, ବାଲ୍ମୀକିଙ୍କ ପୂର୍ବେ ସଂସ୍କୃତ ଶ୍ଲୋକ ରଚନା ଭାରତରେ ଥିଲା । ତା ନ ହୋଇଥିଲେ, ବାଲ୍ମୀକି ଏଡ଼େ ସୁନ୍ଦର ରାମାୟଣ କାବ୍ୟ ପ୍ରଥମ କରି ଲେଖି ପାରି ନ ଥାନ୍ତେ ।

ରାମାୟଣ କାବ୍ୟରେ ବର୍ଣ୍ଣିତ ଅଛି ଯେ, ବାଲ୍ମୀକି ବୀଣା ସାହାଯ୍ୟରେ କୁଶ-ଲବଙ୍କୁ ରାମାୟଣ ଗାଇବା ଶିଖାଇଥିଲେ ଏବଂ ସେମାନେ ଅଶ୍ୱମେଧ

ଯଜ୍ଞବେଳେ ସେହି ଗୀତ ରାମଚନ୍ଦ୍ରଙ୍କୁ ଶୁଣାଇଥିଲେ । ରାମାୟଣର ବାଳକାଣ୍ଡର ବର୍ଣ୍ଣନାରୁ ଜଣାଯାଏ, ନାରଦ ରାମଚନ୍ଦ୍ରଙ୍କ ଚରିତ ବାଲ୍ମୀକିଙ୍କୁ କହିଥିଲେ ।

ଏହି କଥା ବୋଧହୁଏ ବାଲ୍ମୀକିଙ୍କୁ ରତ୍ନାକର ଦସ୍ୟୁ ରୂପେ ବର୍ଣ୍ଣନା କରେ ଏକ କିମ୍ବଦନ୍ତୀ ହୋଇଛି ।

ରସୈଃ ଶୃଙ୍ଗାରକରୁଣ ହାସ୍ୟରୌଦ୍ର ଭୟାନକୈଃ ।
ବୀରାଦିଭିଃ ରସୈଃ ଯୁକ୍ତଂ କାବ୍ୟମେତଦଗାୟତାଂ ।
ତୌତୁ ଗାନ୍ଧର୍ବତତ୍ତ୍ୱଜ୍ଞୌ ସ୍ଥାନମୂର୍ଚ୍ଛିତ କୋବିଦୌ ।
(ବାଳକାଣ୍ଡ—ଚତୁର୍ଥସର୍ଗ)

ରାମାୟଣର ଏହି ଲୋକ ଧାଡ଼ିରୁ ଜଣାଯାଏ ଯେ, ରାମାୟଣ ରଚନା ସମୟରେ ଗାନ୍ଧର୍ବ ବା ସଙ୍ଗୀତ ବିଦ୍ୟା ଓ ଅଳଙ୍କାର ଶାସ୍ତ୍ର ବହୁତ ଉନ୍ନତ ଥିଲା । ଏ ଉନ୍ନତି ରାମ-ରାବଣ-ଯୁଦ୍ଧ କାଳର ଅନେକ ପରେ ଘଟିଥିଲା ।

ରାମ ରାବଣ ଭାରତରେ ବହୁଦିନ ପୂର୍ବେ ପ୍ରାଚୀନତମ ଯୁଗରେ ଯୁଦ୍ଧ କରିଥିଲେ । ସେହି ଯୁଦ୍ଧ କାହାଣୀ ଲୋକମୁଖରେ ଓ ଲେଖାରେ ଯୁଗ ଯୁଗ ଧରି ଚାଲି ଆସୁଥିଲା । ତାହାକୁ ଅନେକ ପୁରୁଷର ଲୋକେ ଲୋକରଞ୍ଜନ ବା ସୁନ୍ଦର କାବ୍ୟରେ ରଚନା କରିବା ଚେଷ୍ଟା କରିଥିଲେ । ସମସ୍ତଙ୍କ ଶେଷରେ ବାଲ୍ମୀକିଙ୍କ ରଚନା ଉତ୍କୃଷ୍ଟ ଓ ସୁନ୍ଦର ହେବାରୁ ସମାଜରେ ଆଦର ଓ ସ୍ଥାନ ପାଇଲା । ଅନ୍ୟ ସବୁ ଲେଖା ଲୋପ ପାଇଛି ।

ବାଲ୍ମୀକି ରାମସୀତାଙ୍କ ବା ଲବକୁଶଙ୍କ ସମୟର କବି ନଥିଲେ । ସେ ରତ୍ନାକର ରୂପେ ଦସ୍ୟୁକାମ କରୁ ନଥିଲେ, କାରଣ ତାଙ୍କ ପୂର୍ବପୁରୁଷମାନେ ପଣ୍ଡିତ, ବିଦ୍ୱାନ ଓ ସଂସ୍କୃତପନ୍ନ ଉଚ୍ଚ ବଂଶ ରୂପେ ସମାଜରେ ପ୍ରତିଷ୍ଠା ଲାଭ କରିଥିଲେ । ଭୃଗୁ, ଉଶନା ଓ ଚ୍ୟବନ ତହିଁର ଉତ୍କୃଷ୍ଟ ଉଦାହରଣ । କବିତା ରଚନା କରିବା ବାଲ୍ମୀକିଙ୍କର ଏପରି ସ୍ୱାଭାବିକ ଥିଲା ଯେ, ସେ ନିଷାଦକୁ କଥା କହିବାବେଳେ ସୁଦ୍ଧା କଥାଟି କବିତା ଛନ୍ଦରେ ସ୍ୱତଃ ମୁଖରୁ ନିଃସୃତ ହୋଇଥିଲା ।

# ବ୍ୟାସଦେବ

ବ୍ୟାସଦେବ ମହାଭାରତ କାବ୍ୟ ଓ ଭାଗବତ ଭକ୍ତିଗ୍ରନ୍ଥ ରଚନା କରିଥିଲେ ।

ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଲ୍ମଷଂ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ।
ବ୍ୟାସାୟ ବିଷ୍ଣୁରୂପାୟ ବ୍ୟାସରୂପାୟ ବିଷ୍ଣବେ ।
ନମୋ ବୈ ବ୍ରହ୍ମନିଧୟେ ବାଶିଷ୍ଠାୟ ନମୋନମଃ ।

ନମୋଽସ୍ତୁତେ ବ୍ୟାସ ବିଶାଳବୁଦ୍ଧେ ଫୁଲ୍ଲାରବିନ୍ଦାୟତପତ୍ରନେତ୍ର ।
ଯେନ ତ୍ୱୟା ଭାରତତୈଳପୂର୍ଣ୍ଣଃ ପ୍ରଜ୍ୱାଳିତୋ ଜ୍ଞାନମୟଃ ପ୍ରଦୀପଃ ।

ବ୍ୟାସ ବଶିଷ୍ଠଙ୍କ ନପ୍ତା ବା ନାତି, ପରାଶରଙ୍କ ଆତ୍ମଜ ବା ପୁତ୍ର ଏବଂ ଶୁକଦେବଙ୍କ ପିତା ।

ଏହା ସତକଥା ଯେ, ମହାଭାରତ ଓ ଭାଗବତ ଭାରତରେ ଦୁଇଟି ଶ୍ରେଷ୍ଠ ଗ୍ରନ୍ଥ । ମହାଭାରତରେ ସବୁ ଜ୍ଞାନ ଭରିଛି ଏବଂ ମହାଭାରତର ଆଦର୍ଶରେ ଭାରତ ଗଢା ହୋଇଅଛି । ଭାଗବତ ପରି ଭକ୍ତି ଓ ଜ୍ଞାନ ଗ୍ରନ୍ଥ ପୃଥିବୀରେ ନାହିଁ ବୋଲି କୁହାଯାଇ ପାରିବ । ତେଣୁ—

ଅଭ୍ୟାସ କରୁଥିବ ନିତ୍ୟ । ପରମ ଶାସ୍ତ୍ର ଭାଗବତ ।

ଭାରତୀୟମାନେ ପ୍ରତିଦିନ ଘରେ ଘରେ ଭାଗବତ ଭକ୍ତିରେ ପଢ଼ନ୍ତି ଏବଂ ସେହି ଗ୍ରନ୍ଥକୁ ପୂଜା କରନ୍ତି । ପ୍ରତି ଗାଁରେ ଭାଗବତ ଗାଦି ଅଛି । ଗାଁର ଲୋକେ ପ୍ରତିଦିନ ଏକାଠି ଠୁଳ ହୋଇ ଭାଗବତ ଓ ତହିଁର ଜ୍ଞାନ ଆଲୋଚନା କରନ୍ତି ।

ମହାଭାରତ ଓ ଭାଗବତ ଲେଖି ବ୍ୟାସଦେବ ଭାରତରେ ଜ୍ଞାନଦୀପ ଜାଳି ଦେଇଥିଲେ । ଭାରତରେ ସଂସ୍କୃତି ଏହି ଦୁଇ ଗ୍ରନ୍ଥ ଯୋଗେ ଗଠିତ ହୋଇଅଛି । ଅଳ୍ପ କଥାରେ, ଆଧୁନିକ ଭାରତ ବ୍ୟାସଦେବଙ୍କ ହାତରେ ଗଢ଼ା ଭାରତ ।

ଅନେକ ଦିନ ପୂର୍ବେ ପ୍ରୟାଗ ନିକଟରେ ଯମୁନା, ଗଙ୍ଗା ଓ ସରସ୍ୱତୀ ତିନି ନଦୀ ଏକାଠି ମିଶିଥିଲେ । ଏଥିସକାଶେ ସେହି ଜାଗାକୁ "ତ୍ରିବେଣୀ ସଙ୍ଗମ" ବା ନଦୀର ମିଳନ ସ୍ଥାନ କୁହାଯାଏ । କିନ୍ତୁ ଏବେ ସରସ୍ୱତୀ ନଦୀ ଲୋପ ହୋଇଯାଇଛି । କେବଳ ଗଙ୍ଗା ଓ ଯମୁନା ପ୍ରୟାଗଠାରେ ମିଶିଥିବାର ଦେଖାଯାଏ ।

ସରସ୍ୱତୀ ନଦୀର ପଶ୍ଚିମ ତୀର ଓ ଗଙ୍ଗା ମଧ୍ୟରେ ବଦରୀ ବୋଲି ଏକ ବନ ଥିଲା । ସେହି ବନରେ 'ଶମ୍ୟାପ୍ରାସ' ନାମରେ ଆଶ୍ରମ ଥିଲା । ସେହି ଆଶ୍ରମରେ ଅନେକ ମୁନିଋଷି ବାସ କରୁଥିଲେ ।

ବଶିଷ୍ଠଙ୍କ ବଂଶରେ ଜାତ ପରାଶର ବୋଲି ଜଣେ ଋଷି ଗଙ୍ଗା ତୀରବର୍ତ୍ତୀ ସେହି ଆଶ୍ରମରେ ବାସ କରୁଥିଲେ । ସେ ଥରେ ଗଙ୍ଗାନଦୀ ପାର ହେଉଥିଲେ । ସତ୍ୟବତୀ ବା ଯୋଜନଗନ୍ଧା ବୋଲି ଜଣେ କୈବର୍ତ୍ତ ବାଳିକା ତାଙ୍କୁ ନୌକାରେ ଗଙ୍ଗା ପାର କରାଇଲା । ନଦୀ ମଧ୍ୟରେ ପରାଶର ଓ ସତ୍ୟବତୀଙ୍କର ମିଳନ ହୋଇଥିଲା । ସତ୍ୟବତୀ ଋଷିଙ୍କ ଆଶ୍ରମରେ ପତ୍ନୀ ରୂପେ କିଛିଦିନ ରହିଥିଲେ ଏବଂ ବ୍ୟାସଙ୍କୁ ଜନ୍ମ ଦେଇଥିଲେ । ବ୍ୟାସ ଦୁଇ ନଦୀର ମଧ୍ୟସ୍ଥ ଆଶ୍ରମରେ ବା ଗୋଟିଏ ଦ୍ୱୀପରେ ଜନ୍ମିଥିଲେ ବୋଲି ତାଙ୍କୁ ଦ୍ୱୈପାୟନ କହନ୍ତି । କଥିତ ଅଛି ଯେ, ବିଷ୍ଣୁ ପରାଶରଙ୍କ ବୀର୍ଯ୍ୟରେ ବ୍ୟାସରୂପେ ଜନ୍ମିଥିଲେ । ଏଣୁ ତାଙ୍କୁ "କୃଷ୍ଣ ଦ୍ୱୈପାୟନ ବ୍ୟାସ" କହନ୍ତି । ବ୍ୟାସଙ୍କ ଜନ୍ମପରେ ସତ୍ୟବତୀ ଇନ୍ଦ୍ରପ୍ରସ୍ଥର ଚନ୍ଦ୍ରବଂଶୀୟ ରାଜା ଶାନ୍ତନୁଙ୍କୁ ପତି ରୂପେ ସ୍ୱୀକାର କରିଥିଲେ ।

ବ୍ୟାସଦେବଙ୍କ ପାଞ୍ଚ ପୁଅ ଥିଲେ । ସୁମନ୍ତୁ, ଜୈମିନି, ପୈଳ, ଶୁକଦେବ ଓ ବୈଶମ୍ପାୟନ । ଏମାନଙ୍କ ମଧ୍ୟରୁ ଶୁକଦେବ ପ୍ରାକ୍ତନ ଜନ୍ମର ସଂସ୍କାରବଶେ ବ୍ରହ୍ମଜ୍ଞାନୀ ଥିଲେ । ସେ ଯେତେବେଳେ ମାତୃଗର୍ଭରେ ଥିଲେ, ଗର୍ଭରୁ ବାହାରିଲେ ନାହିଁ ଏବଂ ମାତାଙ୍କୁ କହିଲେ, "ମାତା, ମୁଁ ଲଙ୍ଗଳା ହୋଇ କିପରି ବାହାରିବି । ମୋତେ ଏକ ବସ୍ତ୍ର ଦିଅ । ବସ୍ତ୍ର ପିନ୍ଧି ବାହାରିବି ।" ମାତା ବସ୍ତ୍ର ଦେଲେ ଏବଂ ଶୁକଦେବ ମାତୃଗର୍ଭରୁ ନିଃସୃତ ହେଲେ ।

ଗଙ୍ଗା-ସରସ୍ୱତୀ ମଧ୍ୟରେ ଥିବା ବ୍ୟାସଦେବଙ୍କ ଆଶ୍ରମ ବିଦ୍ୟା, ଜ୍ଞାନ ଆଲୋଚନାର ଏକ ପୁଣ୍ୟପୀଠ ଥିଲା । ସେଠାରେ ବହୁ ଋଷି, ବ୍ରାହ୍ମଣ,

ବିଦ୍ୱାନ ବେଦ, ବେଦାଙ୍ଗ, ଉପନିଷଦ ପ୍ରଭୃତି ନାନା ଧର୍ମଶାସ୍ତ୍ରର ବିଷୟ ଆଲୋଚନା କରୁଥିଲେ । ବ୍ୟାସଦେବଙ୍କ ବହୁ ସଂଖ୍ୟକ ଶିଷ୍ୟ ସେହି ଆଶ୍ରମରେ ରହି ବିଦ୍ୟା ଶିକ୍ଷା କରୁଥିଲେ ।

ବ୍ୟାସଦେବଙ୍କ ପୁତ୍ର ଶୁକଦେବ ଅସାମାନ୍ୟ ଧୀ ଓ ପ୍ରାକ୍ତନ ଜନ୍ମ ସଂସ୍କାର ହେତୁ ବ୍ରହ୍ମଜ୍ଞାନରେ ଅସାଧାରଣ ସିଦ୍ଧି ଲାଭ କରିଥିଲେ । କଥିତ ଅଛି ଯେ, ସେ ବ୍ରହ୍ମଙ୍କୁ ଚିହ୍ନିବାରେ ପିତାଙ୍କ ଅପେକ୍ଷା ଅଧିକ ଜ୍ଞାନୀ ଓ ସିଦ୍ଧ ଥିଲେ । ଶୁକଦେବ ବସ୍ତ୍ର ଭକ୍ତିରେ ଜଡ଼ ବା ଉନ୍ମତ୍ତ ପରି ହୋଇ ରହୁଥିଲେ ।

ଥରେ କେତେକ ଦେବଯୁବତୀ ଉଲଗ୍ନ ହୋଇ ଗଙ୍ଗାଜଳରେ ସ୍ନାନ କରୁଥିଲେ । ଶୁକ ହଠାତ୍ ସେଠାରେ ପହଞ୍ଚିଗଲେ । ତାଙ୍କୁ ଦେଖିବା ନିମନ୍ତେ ଦେବସ୍ତ୍ରୀମାନେ ସେହି ଉଲଗ୍ନ ଅବସ୍ଥାରେ ଜଳ ଭିତରୁ ଧାଇଁ ଆସିଲେ । କିନ୍ତୁ କିଛିକ୍ଷଣ ପରେ ବ୍ୟାସଦେବ ସେଠାରେ ପହଞ୍ଚିଥିଲେ । ବ୍ୟାସଦେବଙ୍କୁ ଦେଖି ସ୍ତ୍ରୀମାନେ ଲଜ୍ଜାରେ ଶୀଘ୍ର ଯାଇ ଜଳ ଭିତରେ ପଶିଗଲେ ।

ସ୍ତ୍ରୀମାନଙ୍କ ଆଚରଣ ଦେଖି ବ୍ୟାସଦେବ କ୍ଷୁବ୍ଧ ହେଲେ । ସେ ତିରସ୍କାର କରି କହିଲେ, "ମୁଁ ବୃଦ୍ଧ, ମୋତେ ଦେଖି ତୁମେ ସବୁ ଜଳ ଭିତରେ ପଶିଗଲ । ଆଉ ମୋର ଏଇ ଯୁବକ ପୁଅକୁ ଦେଖି ଉଲଗ୍ନ ଅବସ୍ଥାରେ ତୁମେ ଯୁବତୀମାନେ ପାଣିଭିତରୁ ବାହାରି ପଡ଼ିଥିଲ । ତୁମର ଏ ଆଚରଣ ବଡ଼ ବିଚିତ୍ର ।"

ଯୁବତୀମାନେ ବିନୟରେ ବ୍ୟାସଦେବଙ୍କୁ ଉତ୍ତର ଦେଲେ, ମହାଭାଗ ! "ଆପଣ ବୃଦ୍ଧ ସତ, କିନ୍ତୁ ଆପଣଙ୍କ ବିଷୟବାସନା ଯାଇନାହିଁ । ଆଉ ଶୁକଦେବ ସଂସାରନିର୍ଲିପ୍ତ । ତାଙ୍କର ବିଷୟବାସନା ନାହିଁ । ସ୍ତ୍ରୀ ପୁରୁଷ ଭେଦ ନାହିଁ । ସେ ସମସ୍ତଙ୍କଠାରେ ବ୍ରହ୍ମଙ୍କୁ ଦେଖୁଛନ୍ତି । ସେ ବ୍ରହ୍ମଜ୍ଞାନୀ । ସେ ବାଳକ ପରି ସରଳ । ଏଣୁ ତାଙ୍କୁ ଦେଖିବା ପାଇଁ ଆମ୍ଭେମାନେ ଜଳ-ଭିତରୁ ବାହାରି ଆସିଲୁ । ଆପଣ ପହଞ୍ଚିବାରୁ ପୁଣି ଲଜ୍ଜାରେ ଜଳଭିତରେ ପଶିଲୁ । ଆମ୍ଭମାନଙ୍କର ଭୁଲ ହୋଇଥିଲେ କ୍ଷମା କରିବେ ।"

ଶୁକଦେବ ଜନ୍ମ ଏତେ ନିର୍ଲିପ୍ତ ତ୍ୟାଗୀ ହେଲେ ଯେ, ପିତାଙ୍କୁ ଛାଡ଼ି, ସଂସାର ଛାଡ଼ି ପ୍ରବ୍ରଜ୍ୟାରେ ବିଚରଣ କରିବା ନିମନ୍ତେ ବାହାରିଲେ । ସେ ପିତାଙ୍କ କଥା ଶୁଣୁନାହାନ୍ତି । ଆଗେଇ ଆଗରେ ଯାଉଛନ୍ତି । ବ୍ୟାସଦେବ ପଛେ ପଛେ ଦୌଡ଼ାଇ 'ପୁଅ' 'ପୁଅ' ବୋଲି ଡାକ ପକାଉଛନ୍ତି । ଶୁକଦେବ ବୁଝିଛନ୍ତି, କେହି କାହାର ପୁଅ କି ପିତା ନୁହେଁ । ସେହି ମାୟା ତାଙ୍କୁ ଛାଡିଛି ସିନା ବ୍ୟାସଦେବଙ୍କୁ ଛାଡ଼ିନାହିଁ । ଶୁକଦେବ ପିତାଙ୍କ ଡାକରେ ଉତ୍ତର ଦେଉନାହାନ୍ତି । ତାଙ୍କର ଆତ୍ମା, ବନର ପଶୁପକ୍ଷୀ, ବୃକ୍ଷଲତାଙ୍କ ଭିତରେ ପ୍ରବେଶ କରି ଯାଇଥିଲା । ବ୍ୟାସଦେବ ଯେତେବେଳେ 'ପୁଅ' 'ପୁଅ' ବୋଲି ଡାକନ୍ତି, ପଶୁପକ୍ଷୀ ବୃକ୍ଷଲତା ଉତ୍ତର ଦେଲେ ସିନା, ଶୁକଦେବ କିଛି ନ ଶୁଣିପାରି ଆଗକୁ ବଢ଼ିଲେ । ବ୍ୟାସଦେବ ବୁଝିପାରିଲେ, ପୁଅଙ୍କ ଆତ୍ମା ବ୍ରହ୍ମରେ ଲଗ୍ନ ହୋଇଛି, ସେ ଆଉ ତାଙ୍କ ପୁଅ ନୁହନ୍ତି, ସେ ନିର୍ଲିପ୍ତ । ତେଣୁ ଆଉ ପୁଅ ପଛରେ ନ ଦୌଡ଼ାଇ ଫେରିଆସିଲେ ।

ବ୍ୟାସଦେବ ଭାଗବତ ୧ମସ୍କନ୍ଧ ୨ୟ ଅଧ୍ୟାୟରେ କହିଛନ୍ତି—
ଯଂ ପ୍ରବ୍ରଜନ୍ତମନୁପେତମପେତକୃତ୍ୟଂ ।
ଦ୍ୱୈପାୟନୋ ବିରହକାତର ଆଜୁହାବ ॥
ପୁତ୍ରେତି ତନ୍ମୟତୟା ତରବୋଽଭିନେଦୁଃ ।
ତଂ ସର୍ବ ଭୂତହୃଦୟଂ ମୁନିମାନତୋଽସ୍ମି ॥

(ସଂସାରବିରାଗୀ ଶୁକଦେବ ପ୍ରବ୍ରଜ୍ୟାରେ ଗୃହ ଛାଡ଼ି ଯାଉଛନ୍ତି । ବ୍ୟାସଦେବ ପୁତ୍ର ବିରହରେ କାତର ହୋଇ ଡାକୁଛନ୍ତି । ବନର ତରୁମାନଙ୍କରେ ଶୁକଦେବଙ୍କ ଆତ୍ମା ପ୍ରବେଶ କରିଛି । ସେହି ଆତ୍ମା ତରୁମାନଙ୍କରେ ଥାଇ ଉତ୍ତର ଦେଉଛି । ସମସ୍ତ ପ୍ରାଣୀଙ୍କ ଆତ୍ମା ସ୍ୱରୂପ ସେହି ମୁନି ଶୁକଦେବଙ୍କୁ ମୋର ପ୍ରଣାମ । )

ବ୍ୟାସଦେବଙ୍କ ଆଶ୍ରମ ଏକ ଶିକ୍ଷାଶ୍ରମ ଓ ବିଦ୍ୟାଚର୍ଚ୍ଚାର କେନ୍ଦ୍ର ଥିଲା । ସେଠାରେ ବହୁ ଶିଷ୍ୟ ଉପଶିଷ୍ୟ ରହି ବିଦ୍ୟାଶିକ୍ଷା କରୁଥିଲେ । ସେମାନେ ବ୍ରହ୍ମଚର୍ଯ୍ୟ ଧର୍ମରେ ଗୃହୀମାନଙ୍କଠାରୁ ଭିକ୍ଷା କରି ବଞ୍ଚୁଥିଲେ ଏବଂ ବିଦ୍ୟାଲୋଚନାରେ କାଳ ଯାପନ କରୁଥିଲେ । ଭାରତର

ଶାସ୍ତ୍ର ଓ ବଦ୍ୟା ଅସୀମ । ଶିଷ୍ୟମାନେ ଗୋଟିଏ ଗୋଟିଏ ଅଙ୍ଗ ମାତ୍ର ସାଧନା ଓ ଅଭ୍ୟାସ କରୁଥିଲେ । ଭାଗବତରୁ ଜଣାଯାଏ ଯେ, ବ୍ୟାସଦେବଙ୍କ ପୁତ୍ର ପୈଳ ଋକ୍‌ବେଦ ଆୟତ୍ତ କରୁଥିଲେ । ଅନ୍ୟ ପୁତ୍ର ଜୈମିନି ସାମବେଦ ଏବଂ ଭୃଗୁପୁତ୍ର ବୈଶମ୍ପାୟନ ଯଜୁର୍ବେଦ ଶିକ୍ଷା କରୁଥିଲେ । ଅଙ୍ଗିରା ନାମକ ଶିଷ୍ୟ ଅଥର୍ବ ବେଦ ଶିକ୍ଷା କରୁଥିଲେ । ରୋମହର୍ଷଣ ନାମକ ଶିଷ୍ୟ ଅଷ୍ଟାଦଶ ପୁରାଣ ଶିକ୍ଷା କରୁଥିଲେ । ଏପରି ଭିନ୍ନ ଭିନ୍ନ ଶିଷ୍ୟ ବିଭିନ୍ନ ଶାସ୍ତ୍ର ଆଲୋଚନାରେ ଲାଗିଥିଲେ । ବେଦବ୍ୟାସ ସ୍ୱୟଂ ବିଷ୍ଣୁଙ୍କ ଅବତାର ଏବଂ ସର୍ବଶାସ୍ତ୍ରରେ ପାରଦର୍ଶୀ ଥିଲେ ।

ବ୍ୟାସାୟ ବିଷ୍ଣୁରୂପାୟ ବ୍ୟାସରୂପାୟ ବିଷ୍ଣବେ ।
ନମୋ ବୈ ବ୍ରହ୍ମନିଧୟେ ବାଶିଷ୍ଠାୟ ନମୋନମଃ ।

(ବ୍ୟାସ ବିଷ୍ଣୁଙ୍କ ସ୍ୱରୂପ ଏବଂ ବିଷ୍ଣୁ ବ୍ୟାସରୂପରେ ଅବତୀର୍ଣ୍ଣ । ବ୍ୟାସ ବ୍ରହ୍ମଜ୍ଞାନୀ ମହାପଣ୍ଡିତ) ।

ବ୍ୟାସ ବୁଝି ପାରିଥିଲେ, ବୈଦିକ ଭାଷା ଓ ଜ୍ଞାନତତ୍ତ୍ୱ ତଥା ଭାରତୀୟ ଶାସ୍ତ୍ରସମୂହର ତଥ୍ୟ ସାଧାରଣ ଜନତା ପକ୍ଷରେ ଦୁର୍ବୋଧ ଓ ଦୁଷ୍ପ୍ରବେଶ୍ୟ ହୋଇଛି । ବିଶେଷତଃ ସ୍ତ୍ରୀ ଓ ଶୂଦ୍ରମାନେ ତହିଁରୁ ଉପକାର ପାଇ ପାରୁନାହାନ୍ତି । କେବଳ ଅଳ୍ପ କେତେକ ବିଦ୍ୱାନ୍ ଭାରତୀୟ ଶାସ୍ତ୍ର-ଗୁଡ଼ିକର ଆଲୋଚନା କରିବାରେ ସମର୍ଥ ହେଉଛନ୍ତି । ସେମାନେ ମଧ୍ୟ ସମସ୍ତ ଶାସ୍ତ୍ରରୁ ଜ୍ଞାନ ଆହରଣ କରିବାକୁ ସମୟ ସୁଯୋଗ ପାଇ ପାରୁନାହାନ୍ତି । ତେଣୁ ସେ ସେହି ଜ୍ଞାନଭଣ୍ଡାରକୁ ସମସ୍ତଙ୍କର ସୁଲଭ କରିବେ ବୋଲି ସ୍ଥିର କଲେ । ସମସ୍ତ ଶାସ୍ତ୍ରର ବିସ୍ତୃତ ଆଲୋଚନା କରି ଏବଂ ସମସ୍ତରୁ ସାରତଥ୍ୟ ଓ ଜ୍ଞାନ ସଂଗ୍ରହ କରି, ତାହା ମହାଭାରତ କାବ୍ୟ ଆକାରରେ ପ୍ରଣୟନ କଲେ । ମହାଭାରତ ଏପରି ଉଚ୍ଚକୋଟିର ଜ୍ଞାନଭଣ୍ଡାର ଓ ଏପରି ସହଜ ହେଲା ଯେ, ଭାରତର ସମସ୍ତ ଲୋକ ତାକୁ ଆଦର କଲେ । ସମସ୍ତେ କହିଲେ, "ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ ।" ପ୍ରକୃତରେ ମହାଭାରତ ପରି ଗ୍ରନ୍ଥ ଓ ଜ୍ଞାନଭଣ୍ଡାର ପୃଥିବୀରେ ନାହିଁ । ଏହା ଅଠର ପର୍ବ ବା ଖଣ୍ଡରେ ବିଭକ୍ତ । ଏଥିରେ ସୃଷ୍ଟିତତ୍ତ୍ୱ ଇତିହାସ, ରାଜନୀତି, ସାମାଜିକ ବିଧି, ଧର୍ମନୀତି, ଆଶ୍ରମବିଧି ଓ କର୍ତ୍ତବ୍ୟ, ବିଷ୍ଣୁଭକ୍ତି

ଇତ୍ୟାଦି ସମସ୍ତ କଥା ରହିଛି । ବିଶେଷତଃ ଉପନିଷଦମାନଙ୍କରୁ ସୂକ୍ଷ୍ମତତ୍ତ୍ୱ ସଂଗ୍ରହ କରି ବ୍ୟାସଦେବ ତାକୁ ଶ୍ରୀମଦ୍ ଭଗବଦ୍ ଗୀତା ଆକାରରେ ଏପରି ଏକ ଉଚ୍ଚ ଧରଣର ରଚନା ପ୍ରସ୍ତୁତ କରିଛନ୍ତି ଯେ, ଭାରତର ପ୍ରତ୍ୟେକ ଜ୍ଞାନୀ ତାକୁ ପରମ ଆଦରରେ ପ୍ରତ୍ୟହ ପାଠ ଓ ଅନୁଧ୍ୟାନ କରୁଛନ୍ତି । ଶିକ୍ଷିତ ବିଦ୍ୱାନ୍, ଯୁବକବୃନ୍ଦ, ଉଚ୍ଚନୀଚ ସମସ୍ତେ ଗୀତା ପଢ଼ନ୍ତି । ଯାହାର ଯେତିକି ବିଦ୍ୟା, ସେ ସେହି ଅନୁସାରରେ ଗୀତାରୁ ଜ୍ଞାନ ଓ ଆନନ୍ଦ ପାଆନ୍ତି । ଯେତେ ପଢ଼ିଲେ ହେଁ ଗୀତା ପୁରୁଣା ପରି ଜଣା ପଡ଼େ ନାହିଁ, ସବୁବେଳେ ନୂଆ ଦିଶେ ଏବଂ ପୁଣି ପୁଣି ପଢ଼ିବାକୁ ମନ ହୁଏ ।

ସେଥିପାଇଁ କବି ଲେଖିଛନ୍ତି,

ସର୍ବୋପନିଷଦୋ ଗାବୋ ଦୋଗ୍‌ଧା ଗୋପାଳନନ୍ଦନଃ ।
ପାର୍ଥୋ ବତ୍ସଃ ସୁଧୀର୍ଭୋକ୍ତା ଦୁଗ୍‌ଧଂ ଗୀତାମୃତଂ ମହତ୍ ।

( ଉପନିଷଦମାନ ଗାଈ, ଅର୍ଜୁନ ବାଛୁରୀ, ଶ୍ରୀକୃଷ୍ଣ ଦୋହନକାରୀ, ଗୀତା ଅମୃତ ଦୁଧ ଏବଂ ବିଦ୍ୱାନ୍‌ମାନେ ଦୁଗ୍‌ଧର ଭୋକ୍ତା । )

ଗୀତା ଭାରତର ଅଦ୍ୱୈତାମୃତ ।

ଭାରତର ଅଦ୍ୱିତୀୟ ଜ୍ଞାନୀ ନାରଦ ମହାଭାରତ ପ୍ରଣୟନ କଥା ଜାଣିଲେ । ସେ ତାହା ପାଠ କରି ଏପରି ସନ୍ତୁଷ୍ଟ ହେଲେ ଯେ, ନିଜେ ଆଗ୍ରହରେ ଯାଇ ବ୍ୟାସଦେବଙ୍କ ଆଶ୍ରମରେ ପହଞ୍ଚିଲେ । ନାରଦ କହିଲେ, "ହେ ସିଦ୍ଧ ମୁନି ! ତୁମ୍ଭେ ସମସ୍ତ ବେଦ ଶାସ୍ତ୍ରରୁ ସଂଗ୍ରହକରି ମହାଭାରତ ଗ୍ରନ୍ଥ ଲେଖିଛ । ପୃଥିବୀର ଯେତେ ଇଷ୍ଟ ଧର୍ମ ସବୁ ସେଥିରେ ରହିଛି ।"

ବ୍ୟାସଦେବ ଉତ୍ତର କଲେ, "ଭଗବଦ୍ ଉପାସନା ବା ଭକ୍ତିର ବିଷଦ ମାର୍ଗକୁ ନିଷ୍କାମ ଧର୍ମ ଆକାରରେ ମହାଭାରତରେ ମୁଁ ଥୋଇ ପାରି ନ ଥିବାରୁ ମୋ ମନରେ ସନ୍ତୋଷ ନାହିଁ ।"

ନାରଦ ବ୍ୟାସଦେବଙ୍କୁ ଜନତାର ଉପକାର ଓ ମୋକ୍ଷମାର୍ଗ ନିମନ୍ତେ ଭାଗବତ ଗ୍ରନ୍ଥ ଲେଖିବାକୁ ଏବଂ ତହିଁରେ ପ୍ରବୃତ୍ତି ନିବୃତ୍ତି ମାର୍ଗ ବା ନିଷ୍କାମ ଭକ୍ତିର ବିଷଦ ଆଲୋଚନା କରିବାକୁ ଉପଦେଶ ପ୍ରେରଣା ଦେଲେ । ନାରଦଙ୍କ ପ୍ରେରଣାରେ ବ୍ୟାସଦେବ 'ଭାଗବତ' ଭଗବତଙ୍କ

ସାତ୍ତ୍ୱିକ ଭକ୍ତିଗ୍ରନ୍ଥ ଲେଖିଲେ । ଈଶ୍ୱରଙ୍କ ବିଷୟ ଜ୍ଞାନ ନିମନ୍ତେ ମହାଭାରତ ଶ୍ରେଷ୍ଠ ଗ୍ରନ୍ଥ ଏବଂ ପାରମାର୍ଥିକ ବା ସାତ୍ତ୍ୱିକ ଜ୍ଞାନ ନିମନ୍ତେ ଭାଗବତ ଶ୍ରେଷ୍ଠ ଗ୍ରନ୍ଥ । ଏ ଦୁଇଟି ଗ୍ରନ୍ଥ ଲେଖି ବ୍ୟାସଦେବ ଭାରତର ଅଶେଷ ଉପକାର କରିଛନ୍ତି ଏବଂ ଅମର ହୋଇଛନ୍ତି ।

ଭାଗବତରେ କଥିତ ଅଛି ଯେ, ବ୍ୟାସଦେବ ପ୍ରଥମେ ଶୁକଦେବଙ୍କୁ ଭାଗବତର ତତ୍ତ୍ୱ ଶିକ୍ଷା ଦେଇଥିଲେ । ଭାଗବତର ତତ୍ତ୍ୱ ଆଲୋଚନା କରି ଶୁକଦେବଙ୍କ ହୃଦୟରେ ପରମ ତତ୍ତ୍ୱଜ୍ଞାନ, ନିଷ୍କାମ ଭକ୍ତି ଓ ବୈରାଗ୍ୟର ଉଦୟ ହୋଇଥିଲା । ସେ ସଂସାର ଛାଡ଼ି ପ୍ରବ୍ରଜ୍ୟା ଗ୍ରହଣ କରିଥିଲେ । ଶୁକଦେବ ଭାଗବତର ଧର୍ମଶିକ୍ଷା ପ୍ରଚାର କରିଥିଲେ ।

ନିଗମକଳ୍ପତରୋର୍ଗଳିତଂ ଫଳଂ,
ଶୁକମୁଖାଦମୃତଦ୍ରବସଂଯୁତଂ ।
ପିବତ ଭାଗବତଂ ରସମାଳୟଂ,
ମୁହୁରହୋ ରସିକା ଭୁବି ଭାବୁକାଃ ।

( ବେଦ କଳ୍ପତରୁ । ତାହାର ଫଳ ଶୁକଙ୍କ ମୁଖରୁ ପଡ଼ିଛି । ସେହି ଫଳ ଅମୃତ ରସଯୁକ୍ତ ହୋଇଛି । ସେହି ଫଳ 'ଭାଗବତ' ରସର ଭଣ୍ଡାର । ପୃଥିବୀର ଭାବୁକ ରସିକମାନେ ତାହା ପାନ କର । )

ଭାଗବତ ଭଗବାନଙ୍କ ଭକ୍ତିରସର ଭଣ୍ଡାର । ସେଥିପାଇଁ ଭାଗବତକୁ ପରମ ଶାସ୍ତ୍ର କହନ୍ତି ।

'ପରମ ଶାସ୍ତ୍ର ଭାଗବତ, ଅଭ୍ୟାସ କରୁଥିବ ନିତ୍ୟ ।'

ଭାଗବତଧର୍ମୀ ଅହିଂସାର ପ୍ରକୃଷ୍ଟ ଉପାସକ ହୁଏ । ତାର ସଂସାର ସୁଖମୟ ହୁଏ ।

ଅତି ପ୍ରାଚୀନ କାଳରେ ଲିପି ବା ଲେଖିବା ପ୍ରଣାଳୀ ନ ଥିଲା । ଅନେକ ଋଷି ଋଗ୍‌ବେଦର ସୂକ୍ତ ବା ସ୍ତୋତ୍ରମାନ ମୌଖିକ ରଚନା କରିଥିଲେ । ସେମାନଙ୍କ ରଚିତ ସୂକ୍ତମାନ ଆର୍ଯ୍ୟମାନେ ଶୁଣି ଶୁଣି କଣ୍ଠସ୍ଥ କରୁଥିଲେ । ସେଥିପାଇଁ ବେଦକୁ ଶ୍ରୁତି କହନ୍ତି । ପରବର୍ତ୍ତୀ

କାଳରେ ଆର୍ଯ୍ୟମାନେ ଲିପି ବା ଲେଖିବା ପ୍ରଣାଳୀ ଉଦ୍ଭାବନ କଲେ । ସେମାନେ ସୂକ୍ତମାନ ସଙ୍କଳନ କରି ସେଗୁଡ଼ିକ ଋଗ୍‌ବେଦ ଆକାରରେ ଲେଖି ରଖିଲେ । ଯଜ୍ଞ ହୋମପାଇଁ ସେହିପରି ଯଜୁର୍ବେଦ ସଙ୍କଳିତ ହୋଇଥିଲା । ସାମବେଦ ଓ ଅଥର୍ବବେଦ ମଧ୍ୟ ଏହିପରି ସଙ୍କଳନ କରାଯାଇଥିଲା ।

'ବ୍ୟାସ' ଶବ୍ଦର ଅର୍ଥ ଯେ ସଙ୍କଳନ କରେ । ଲୋକେ କହନ୍ତି ବେଦବ୍ୟାସ ବେଦମାନ ସଙ୍କଳନ କରିଥିଲେ । ଜଣେ ବ୍ୟକ୍ତି ବେଦମାନ ସଙ୍କଳନ କରି ନ ଥିବେ ଏବଂ ଏକାଧିକ ବେଦବ୍ୟାସ ଥିବେ ।

ଆଜକାଲି ବିଦ୍ୱାନ୍, ପଣ୍ଡିତ ଓ କବିମାନେ ନିଜ ଗ୍ରନ୍ଥରେ ନିଜ ନାମ ଦେଉଛନ୍ତି । ସେଥିରେ ସେମାନଙ୍କୁ ଲୋକେ ଜାଣୁଛନ୍ତି । ସେମାନଙ୍କର ଯଶ ହେଉଛି । ପୂର୍ବକାଳରେ ଭାରତର ଲୋକେ ଏପରି ଯଶ ଅର୍ଜିବାକୁ ଘୃଣା କରୁଥିଲେ । ଗ୍ରନ୍ଥ ଲେଖି, ଜ୍ଞାନ ପ୍ରଚାର କରି ଦେଶସେବା କରିବାକୁ ଏବଂ ଲୋକଙ୍କ ଉପକାର କରିବାକୁ ପରମ ପୁରୁଷାର୍ଥ ମନେକରୁଥିଲେ ।

କଥିତ ଅଛି ଯେ, ଇନ୍ଦ୍ରଦ୍ୟୁମ୍ନ ବୋଲି ଜଣେ ରାଜା ସର୍ବପ୍ରଥମେ ପୁରୀର ଜଗନ୍ନାଥ ଦେଉଳ ତୋଳିଥିଲେ । ବ୍ରହ୍ମା ତାଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ତାଙ୍କୁ ବର ମାଗିଲେ । ଇନ୍ଦ୍ରଦ୍ୟୁମ୍ନ କହିଲେ, ' ପ୍ରଭୋ, ମୋତେ ଏହି ବର ଦିଅନ୍ତୁ ଯେ, ମୋର ବଂଶ ଲୋପ ହେଉ । କାଳେ ପଛକୁ ମୋ ବଂଶର କେହି କହିବ ଯେ, ମୋ ପୂର୍ବପୁରୁଷ ଇନ୍ଦ୍ରଦ୍ୟୁମ୍ନ ଏହି ଦେଉଳ ତୋଳାଇଥିଲେ ।'' ଏକଥା ସତ ହେଉ କି ମିଛ ହେଉ, ଏହା ନିଶ୍ଚିତ ଯେ, ଭାରତୀୟ ଜାତି ନାମ ବା ଯଶ ପ୍ରକାଶ ଲୋଭ ଲାଗି କରେନାହିଁ ।

ମହାଭାରତ ଓ ଭାଗବତ ପରି ଗ୍ରନ୍ଥର ପ୍ରଣେତା କିଏ, ସେ ବିଷୟରେ ଏବେ ପଣ୍ଡିତମାନଙ୍କ ମଧ୍ୟରେ ବିଶେଷ ଆଲୋଚନା ଚାଲିଛି । ଆମର ବିଶ୍ୱାସ ବ୍ୟାସଦେବ ଏହା ଲେଖିଥିଲେ । ସେ ଯେ ହେଉନ୍ତୁ, ଯେ ଲେଖିଥିଲେ ତାଙ୍କୁ ବ୍ୟାସଦେବ କୁହାଯିବ । ବ୍ୟାସଦେବ ନାମ ବା ଯଶ ପ୍ରକାଶ ସେହି ଦୁଇ ଗ୍ରନ୍ଥ ଲେଖି ନ ଥିଲେ । ତା ହୋଇଥିଲେ, ତାଙ୍କ ନାମ ମଧ୍ୟ ଗ୍ରନ୍ଥରେ ଲେଖିଯାଇଥାନ୍ତା ।

ପରନ୍ତୁ, ବ୍ୟାସ ଶବ୍ଦର ଅର୍ଥ ସଙ୍କଳୟିତା । ପ୍ରଣେତାଙ୍କ ପ୍ରକୃତ ନାମ କେବେ ବ୍ୟାସ ହୋଇ ନ ଥିବ । ପଣ୍ଡିତମାନେ କହନ୍ତି ଭାରତରେ ଜଣେ ବ୍ୟାସ ନ ଥିଲେ । ପରାସରଙ୍କ ପୁଅଙ୍କୁ ଓ କୃଷ୍ଣ ଦ୍ୱୈପାୟନ ବ୍ୟାସ କୁହାଯାଏ । ସେ ଦ୍ୱୀପରେ ଜନ୍ମିଥିବାରୁ ଦ୍ୱୈପାୟନ ଓ ସଙ୍କଳନ କରିଥିବାରୁ ବ୍ୟାସ ହୋଇଥିଲେ । ତାଙ୍କ ପୂର୍ବରୁ ଅନ୍ୟ କେତେକ ବେଦ-ବ୍ୟାସ ମଧ୍ୟ ଥିଲେ । ତେବେ ତାଙ୍କ ନାମ କୃଷ୍ଣ ଥାଇପାରେ । ତଥାପି ବିଷ୍ଣୁ ବା କୃଷ୍ଣ ବ୍ୟାସ ରୂପେ ଜନ୍ମିଥିଲେ । ତାଙ୍କ ପ୍ରକୃତ ନାମ କୃଷ୍ଣ ମଧ୍ୟ ହୋଇ ନ ଥିବ ।

ବସ୍ତୁତଃ ଦେଖାଯିବ, ମହାଭାରତରୁ ଜଣାଯାଏ ଯେ, ବେଦବ୍ୟାସଙ୍କ ହାଙ୍କିବା ମତେ କେଣଶ ମହାଭାରତ ଲେଖିଥିଲେ ଏବଂ ମହାଭାରତରେ ପ୍ରଣେତା କେହି ନୁହନ୍ତି । ପ୍ରଥମେ ମହାଭାରତରେ ତିରିଶ ହଜାର ଶ୍ଳୋକ ଥିଲା । ତାହା ଦେବତାମାନଙ୍କୁ ଶୁଣିବା ନିମନ୍ତେ ଦିଆଯାଇଥିଲା । ତାପରେ ପିତୃମାନଙ୍କୁ ପନ୍ଦର ହଜାର ଏବଂ ଯକ୍ଷଗନ୍ଧର୍ବମାନଙ୍କୁ ଚଉଦ ହଜାର ଶ୍ଳୋକ ଶୁଣିବାକୁ ଦିଆଗଲା । ଶେଷରେ ମନୁଷ୍ୟମାନେ ଯେତେବେଳେ ମହାଭାରତ ଶୁଣିବାକୁ ପାଇଲେ, ସେଥିରେ ଲକ୍ଷେ ଶ୍ଳୋକ ଥିଲା । ❊

ଏଥିରୁ ସ୍ପଷ୍ଟ ପ୍ରମାଣ ମିଳିବ ଯେ, ତଥାକଥିତ ବ୍ୟାସ ଯେଉଁ ମୂଳ ମହାଭାରତ ଲେଖିଥିଲେ, ଅନ୍ୟ ବ୍ୟାସମାନେ ତାହାର ତହିଁର ଆକାରକୁ ତିନି ଗୁଣରୁ ଅଧିକ ବଢ଼ାଇ ଦେଇଥିଲେ । ଅନେକ ଆଖ୍ୟାୟିକା ଓ ଅନେକ ଶ୍ଳୋକ ମହାଭାରତରେ ଯୋଡ଼ା ହୋଇଛି ଏବଂ ଲେଖକମାନଙ୍କୁ 'ବ୍ୟାସ' ବୋଲି ଆଖ୍ୟା ଦିଆଯାଇଛି । ପ୍ରଥମ ବ୍ୟାସ ଯୁଧିଷ୍ଠିରାଦି ପାଣ୍ଡବ ଓ ଦୁର୍ଯ୍ୟୋଧନାଦି କୌରବମାନଙ୍କ ଇତିହାସ ଆକାରରେ ମୂଳ ମହାଭାରତରେ କେବଳ ଜ୍ଞାନର ଭଣ୍ଡାର ସଂଗ୍ରହ କରିଥିଲେ ।

ବ୍ୟାସଙ୍କ ସଙ୍ଗେ ଯେଉଁ ସତ୍ୟବତୀଙ୍କ ସଂଯୋଗ ହୋଇଥିଲା, ସେହି ମତ୍ସ୍ୟଗନ୍ଧା କୌରବ ପାଣ୍ଡବମାନଙ୍କର ପୂର୍ବପୁରୁଷ ଶାନ୍ତନୁଙ୍କ ଭାର୍ଯ୍ୟା ହୋଇଥିଲେ । ଶାନ୍ତନୁଙ୍କ ଔରସରେ ତାଙ୍କର ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ

❊ ସଂସ୍କୃତ ମହାଭାରତ—ଆଦିପର୍ବ—ପ୍ରଥମ ଅଧ୍ୟାୟ ।

ଦୁଇ ପୁତ୍ର ଜାତ ହୋଇଥିଲେ । ବିଚିତ୍ରବୀର୍ଯ୍ୟଙ୍କ ପୁତ୍ରମାନେ ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୁର । ପାଣ୍ଡୁଙ୍କ ପୁତ୍ର ଅର୍ଜ୍ଜୁନ । ଅର୍ଜ୍ଜୁନଙ୍କ ପୁତ୍ର ଅଭିମନ୍ୟୁ । ଅଭିମନ୍ୟୁଙ୍କ ପୁତ୍ର ପରୀକ୍ଷିତ, ପରୀକ୍ଷିତଙ୍କ ପୁତ୍ର ଜନମେଜୟ । ପରୀକ୍ଷିତ ଷାଠିଏ ବର୍ଷ ରାଜତ୍ୱ କରିଥିଲେ ।

ଜନମେଜୟ ବ୍ୟାସଦେବଙ୍କ ସପ୍ତମ ଅନୁପୁରୁଷ । ତାହାଙ୍କ କଥା ମହାଭାରତରେ ବର୍ଣ୍ଣିତ ହୋଇଅଛି ଏବଂ କେବଳ ପରୀକ୍ଷିତ ଷାଠିଏ ବର୍ଷ ରାଜତ୍ୱ କରିଥିଲେ । ବ୍ୟାସଦେବଙ୍କ ପକ୍ଷରେ ଜନମେଜୟଙ୍କ ଇତିହାସ ମହାଭାରତରେ ଲେଖିବା ଅସମ୍ଭବ ଥିଲା । ସୁତରାଂ ପରାଶରଙ୍କ ପୁତ୍ର ବ୍ୟାସ ମହାଭାରତର ଲେଖକ ନ ଥିଲେ ।

ଲେଖକ ଯିଏ ହେଉନ୍ତୁ, ମହାଭାରତ ଓ ଭାଗବତ ପ୍ରଣେତା ଅସୀମ ଜ୍ଞାନୀ ଓ ମହାପୁରୁଷ ଥିଲେ । ସେପରି ବ୍ୟକ୍ତି ଓ କବିଙ୍କ ଜନ୍ମ ଦେଇ ଭାରତବର୍ଷ ଧନ୍ୟ ହୋଇଛି । ଆମ୍ବୁର ରସ ଖାଇଲେ ମିଠା ପାଇବ, ଆମ୍ବୁ କିଏ ଲଗାଇଲା ଜାଣି କିଛି ଲାଭ ନାହିଁ । ତୁମ୍ଭ ହାତରେ ଆମ୍ବୁ ଅଛି । ମହାଭାରତ ଓ ଭାଗବତ ପଢ଼ି ଜ୍ଞାନ ସଂଗ୍ରହ କର ।

ଭାରତରେ ଅସଂଖ୍ୟ ଗ୍ରନ୍ଥ ଅଛି । ଅସଂଖ୍ୟ ଗ୍ରନ୍ଥ ଏପର୍ଯ୍ୟନ୍ତ ପ୍ରକାଶିତ ବା ଛପା ହୋଇନାହିଁ । ସେଗୁଡ଼ିକ ସଂଗ୍ରହ କର, ପଢ଼ । ତୁମେ ମଧ୍ୟ ଜ୍ଞାନର ଭଣ୍ଡାର ହେବ । ଆଜି ଯଦି ମହାଭାରତ ଓ ଭାଗବତର ରଚୟିତା କିଏ, ଠିକଣା କରିପାରିବ, ତା' ହେଲେ ଗୋଟିଏ ବଡ଼ କାର୍ଯ୍ୟ ହେବ ।

—:o:—

## କାଳିଦାସ

ଆଧୁନିକ ସଂସ୍କୃତ ସାହିତ୍ୟରେ କାଳିଦାସ ଭାରତର ମହାକବି । ତାଙ୍କ ପରି କବି ପୃଥିବୀରେ ବିରଳ; କିନ୍ତୁ ତାଙ୍କ ଜନ୍ମସ୍ଥାନ ବା ଜୀବନୀ ସମ୍ବନ୍ଧରେ କିଛି ଜଣାଯାଏ ନାହିଁ । ସେ କେଉଁ ଖ୍ରୀଷ୍ଟାବ୍ଦରେ ଜନ୍ମ ହୋଇଥିଲେ, ସେ ସମ୍ବନ୍ଧରେ ମଧ୍ୟ ପଣ୍ଡିତମାନେ ଏକମତ ନୁହନ୍ତି ।

ବିଦ୍ୟାବତୀ ନାମରେ ଜଣେ ବିଦୁଷୀ ରାଜକୁମାରୀ ଥିଲେ । ସେ ସ୍ଥିର କରିଥିଲେ ଯେ, ଯେଉଁ ବିଦ୍ୱାନ୍ ତାଙ୍କୁ ଶାସ୍ତ୍ରଜ୍ଞାନରେ ପରାସ୍ତ କରିବ, ସେ ତାଙ୍କୁ ବିବାହ କରିବେ । ଅନେକ ବିଦ୍ୱାନ୍ ଏପରି ବିଦୁଷୀ ରମଣୀଙ୍କୁ ପତ୍ନୀରୂପେ ପାଇବାକୁ ଲାଳାୟିତ ହେଲେ କିନ୍ତୁ ସମସ୍ତେ ପରୀକ୍ଷାରେ ପରାସ୍ତ ହୋଇଥିଲେ । ଏଥିରେ ପଣ୍ଡିତମାନଙ୍କ ମନରେ ଲଜ୍ଜା ଓ ଅପମାନ ହେଲା । କେତେକଜଣ ମିଳି ସ୍ଥିର କଲେ ଯେ, ଏମାନେ ଅପମାନର ପ୍ରତିଶୋଧ ନେବେ ଏବଂ ଏକ କପଟ ମୂର୍ଖ ସଙ୍ଗେ ବିଦ୍ୟାବତୀଙ୍କୁ ବିବାହ କରାଇବେ ।



ପଣ୍ଡିତମାନେ ସେ ପ୍ରକାର ଜଣେ କପଟ ମୂର୍ଖକୁ ଖୋଜିବାକୁ ବାହାରିଲେ । କାଳିଦାସ ଗୋଟିଏ ଗଛର ଶାଖାରେ ଚଢ଼ିଛନ୍ତି । ଶାଖାର ଆଗଆଡ଼େ ବସି ମୂଳ-ଆଡ଼୍ ଶାଖାକୁ କାଟୁଛନ୍ତି । ଶାଖାଟି ଛିଣ୍ଡିଗଲେ ସେ ଶାଖା ଧରି ତଳେ ପଡ଼ିବେ ।

ପଣ୍ଡିତମାନେ ଏ କାମ ଦେଖି ବୁଝିଲେ, କାଳିଦାସଙ୍କ ପରି ମୂର୍ଖ ଆଉ ନଥିବେ । ତାଙ୍କୁ ତଳକୁ ଡାକିଲେ, ସୁନ୍ଦର ରାଜକୁମାରୀଙ୍କ ସଙ୍ଗେ ବିବାହର ଲୋଭ ଦେଖାଇଲେ । ତାଙ୍କୁ କହିଲେ ଯେ, ସେ ରାଜକୁମାରୀଙ୍କ ଆଗରେ ମୁହଁ ଫିଟାଇବେ ନାହିଁ, କେବଳ ହାତ ଓ ମୁହଁରେ ଠାରିବେ । କାଳିଦାସ ଖୁସିରେ ରାଜି ହେଲେ ।

ବିଦ୍ୟାବତୀଙ୍କୁ କୁହାଗଲା, "ରାଜକୁମାରୀ, ଏ ମହାପଣ୍ଡିତ । ମୌନବ୍ରତ ଧରିଛନ୍ତି, କଥା କହନ୍ତି ନାହିଁ । କେବଳ ଇଙ୍ଗିତରେ ଆପଣଙ୍କ ପ୍ରଶ୍ନର ଉତ୍ତର ଦେବେ ।"

ରାଜକୁମାରୀ ଗୋଟିଏ ଆଙ୍ଗୁଠି ଦେଖାଇ ପ୍ରଶ୍ନ କଲେ । କାଳିଦାସ ବୁଝିଲେ, ସେ ଗୋଟିଏ ଆଙ୍ଗୁଠିରେ ତାଙ୍କର ଗୋଟିଏ ଆଖି

ଫୁଟାଇଦେବେ ବୋଲି କହୁଛନ୍ତି । ତେଣୁ, କାଳିଦାସ ମୁଣ୍ଡ ହଲାଇ ଦୁଇଟା ଆଙ୍ଗୁଠି ଦେଖାଇଲେ । ଅର୍ଥାତ୍ ସେ ବିଦ୍ୟାବତୀଙ୍କର ଦୁଇଟି ଆଖି ଦୁଇ ଆଙ୍ଗୁଠିରେ ଫୁଟାଇ ଦେବେ ।

ପଣ୍ଡିତମାନେ ଅର୍ଥ କଲେ, "କୁମାରୀ, ଆପଣ ଏକ ବ୍ରହ୍ମ ବୋଲି ଗୋଟିଏ ଆଙ୍ଗୁଠି ଦେଖାଇଲେ । ଏ ପଣ୍ଡିତ ଦୁଇଟି ଆଙ୍ଗୁଠି ଦେଖାଇ ମୁଣ୍ଡ ହଲାଇ ଜଣାଇଦେଲେ ଯେ, ଦ୍ୱିତୀୟ ନାହିଁ ।" ରାଜକୁମାରୀ ସନ୍ତୁଷ୍ଟ ହୋଇ ନବାକ୍ ମୂର୍ଖଙ୍କୁ ବରଣ କଲେ ।

ବରକନ୍ୟା ରାତିରେ ଏକାଠି ଶୋଇଲେ । ମଶାଣି ଦେଖି କାଳିଦାସ ପଚାରିଲେ, 'ଏହାର ବାଟ କେଉଁଠି ?' ବିଦ୍ୟାବତୀଙ୍କର ସନ୍ଦେହ ହେଲା । ଗୋଟିଏ ଗର୍ଦ୍ଦଭ ସେତେବେଳେ ଚିତ୍କାର କଲା । ବିଦ୍ୟାବତୀ କାଳିଦାସଙ୍କୁ ଜାଣିବା ବାହାନାରେ ପ୍ରଶ୍ନ କଲେ, 'କିଏ ପାଟି କରୁଛି ?' ନିପଟ ମୂର୍ଖ ଜଡ଼ କାଳିଦାସ କହିଲେ, 'ଉଟ୍ର' । ବିଦ୍ୟାବତୀ ପୁନରୁକ୍ତି କଲେ, 'କଅଣ ?' କାଳିଦାସ ବୁଝିଲେ, ତାଙ୍କ ଉଚ୍ଚାରଣ ଶୁଦ୍ଧ ହେଲା ନାହିଁ, ପୁଣି କହିଲେ, 'ଉଷ୍ଟ୍ର' ।

ବିଦ୍ୟାବତୀ ବୁଝିଲେ କାଳିଦାସ ମୂର୍ଖ । ସେ ମୂର୍ଖ ସ୍ୱାମୀଙ୍କୁ ତିରସ୍କାର କରିବା ଉଦ୍ଦେଶ୍ୟରେ ଗୋଟିଏ ଶ୍ଲୋକ ରଚନା କଲେ ।

ଉଷ୍ଟ୍ରେ ଲୁମ୍ପତି ଷମ୍ବା ରମ୍ବା,
ତସ୍ମୈ ଦତ୍ତା ବିପୁଳନିତମ୍ବା ।
କିଂ ନ କରୋତି ବିଧି ପରିତୁଷ୍ଟଃ,
କିଂ ନ କରୋତି ସ ଏବ ହି ରୁଷ୍ଟଃ ।

(ସ୍ୱାମୀ, ଆପଣ 'ଉଷ୍ଟ୍ର' ଉଚ୍ଚାରଣ କରି ନ ପାରି କେତେବେଳେ ଷ-ଲୋପ, କେତେବେଳେ ର୍-ଲୋପ କରୁଛନ୍ତି । ବିଦ୍ୟାବତୀ ଆପଣଙ୍କୁ ଲାଭ କଲେ । ଆପଣଙ୍କ ପ୍ରତି ବିଧି ସନ୍ତୁଷ୍ଟ, ବିଧି ସନ୍ତୁଷ୍ଟ ହେଲେ, କଅଣ ନ କରନ୍ତି ? ମୋ ପ୍ରତି ବିଧି ରୁଷ୍ଟ, ବିଧି ରୁଷ୍ଟ ହେଲେ କଅଣ ନ କରନ୍ତି ? )

ବିଦ୍ୟାବତୀ କାଳିଦାସଙ୍କୁ ବାସରଘରୁ ତଡ଼ିଦେଲେ ।

ଲାଞ୍ଛନା ପାଇ କାଳିଦାସ ବହୁ ସ୍ଥାନ ବୁଲି ନାନା ବିଦ୍ୟାରେ ପାଣ୍ଡିତ୍ୟ ଅର୍ଜନ କଲେ । ମୂର୍ଖତ୍ୱ ଦୂର କରି ସେ ଅନେକ ଦିନ ପରେ

ବିଦ୍ୟାବତୀଙ୍କ ନିକଟରେ ଉପଗତ ହେଲେ । ବିଦ୍ୟାବତୀ ଘରର ଦ୍ୱାର ନ ଖୋଲି ପଚାରିଲେ, "ଅସ୍ତି କଶ୍ଚିତ୍ ବାକ୍ ବିଶେଷଃ ?"

କାଳିଦାସ ପାଣ୍ଡିତ୍ୟପୂର୍ଣ୍ଣ ଭାଷାରେ ପ୍ରଶ୍ନର ଉତ୍ତର ଦେଲେ । ଦ୍ୱାର ଖୋଲା ହେଲା । କାଳିଦାସ ପୂର୍ବୋକ୍ତ ଚାରୋଟି ଶବ୍ଦରେ ଚାରୋଟି କାବ୍ୟ ଲେଖି ବିଦୁଷୀ ପତ୍ନୀଙ୍କୁ ଉପହାର ଦେଲେ । ପ୍ରସିଦ୍ଧ କୁମାରସମ୍ଭବ କାବ୍ୟ 'ଅସ୍ତି'ରେ ଆରମ୍ଭ ହୋଇଛି । ବିଚିତ୍ର କଳ୍ପନା ରଚିତ ମେଘଦୂତ କାବ୍ୟ 'କଶ୍ଚିତ୍' ଶବ୍ଦରେ ଆରମ୍ଭ ହୋଇଛି । ଅସାଧାରଣ ପାଣ୍ଡିତ୍ୟ ଓ କବିତ୍ୱପୂର୍ଣ୍ଣ ରଘୁବଂଶ କାବ୍ୟ 'ବାକ୍' ଶବ୍ଦ ଯୋଗେ ଆରମ୍ଭ ହୋଇଛି । 'ବିଶେଷ' ଶବ୍ଦରୁ ଆରବ୍ଧ କାବ୍ୟଟି ଏପର୍ଯ୍ୟନ୍ତ ଆମହାତକୁ ଆସିନାହିଁ ।

ପୂର୍ବୋକ୍ତ ଚାରି କାବ୍ୟ ଛଡ଼ା କାଳିଦାସ 'ଅଭିଜ୍ଞାନଶକୁନ୍ତଳ', ଋତୁସଂହାର, ବିକ୍ରମୋର୍ବଶୀ, ମାଳବିକାଗ୍ନିମିତ୍ର ଓ ଅନ୍ୟ କାବ୍ୟମାନ ମଧ୍ୟ ଲେଖିଥିଲେ । ଅଭିଜ୍ଞାନଶକୁନ୍ତଳ ଗୋଟିଏ ନାଟକ । ସେଥିରେ ଦୁଷ୍ମନ୍ତ ଓ ଶକୁନ୍ତଳାଙ୍କ ବିଷୟ ବର୍ଣ୍ଣିତ । ଏହି ନାଟକ ଏବେ ପୃଥିବୀରେ ପଣ୍ଡିତ-ମାନଙ୍କର ବିସ୍ମୟ ଓ ଆଦର ଲାଭ କରିଅଛି ।

ବ୍ୟାସ ଓ ବାଲ୍ମୀକିଙ୍କ ପରେ କାଳିଦାସଙ୍କ ପରି କବି ଭାରତରେ ଜନ୍ମି ନାହାନ୍ତି । କାଳିଦାସ ପ୍ରକୃତି ଓ ମାନବ ଚରିତ୍ର ବର୍ଣ୍ଣନାରେ ଅଦ୍ଭୁତ ସିଦ୍ଧହସ୍ତ ଥିଲେ ଏବଂ ବିଜ୍ଞାନ-ଦର୍ଶନ-ସାହିତ୍ୟ ସବୁ ବିଷୟରେ ଧୁରୀଣ ଥିଲେ । ତାଙ୍କ ପାଣ୍ଡିତ୍ୟ, କବିତ୍ୱ, ବର୍ଣ୍ଣନାଚାତୁରୀ, ଛନ୍ଦ-ସାରଲ୍ୟ ଓ ଭାବଗାମ୍ଭୀର୍ଯ୍ୟ ଏତେ ଉଚ୍ଚ ଧରଣର ଯେ, ତାଙ୍କପରି କବିଙ୍କ ପାଇଁ ପୃଥିବୀର ଯେ କୌଣସି ଦେଶ ଗୌରବାନ୍ୱିତ ହେବ । ପୃଥିବୀର ବିଭିନ୍ନ ଦେଶର ବିଦ୍ୱାନମାନେ କାଳିଦାସଙ୍କ ଭୂୟସୀ ପ୍ରଶଂସା କରିଅଛନ୍ତି ।

ବିଶେଷ ସମ୍ଭବ, କାଳିଦାସ ପଶ୍ଚିମ ମାଳବର ଅଧିବାସୀ ଥିଲେ ଏବଂ ଉଜ୍ଜୟିନୀର ରାଜା ବିକ୍ରମାଦିତ୍ୟଙ୍କ ସଭାରେ ରହୁଥିଲେ । ବିକ୍ରମାଦିତ୍ୟଙ୍କ ସଭାରେ 'ନବରତ୍ନ' ଥିଲେ । କାଳିଦାସ ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ ଥିଲେ ।

ପାଶ୍ଚାତ୍ୟ ଐତିହାସିକମାନେ କହନ୍ତି, ପାଟଳିପୁତ୍ରର ଗୁପ୍ତବଂଶୀ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ପୂର୍ବୋକ୍ତ ବିକ୍ରମାଦିତ୍ୟ ଥିଲେ ଏବଂ ଉଜ୍ଜୟିନୀରେ ମଧ ତାଙ୍କ ଦ୍ୱିତୀୟ ରାଜଧାନୀ ଥିଲା । ଅତଏବ କାଳିଦାସ ଖ୍ରୀଷ୍ଟଙ୍କ ଜନ୍ମ ପରେ ପଞ୍ଚମ ଶତାବ୍ଦୀର ଲୋକ ଥିଲେ । ଭାରତୀୟ ପଣ୍ଡିତମାନେ ଏଥିରେ ମତଭେଦ କରନ୍ତି । ସେମାନେ କହନ୍ତି, କାଳିଦାସ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଶୁଙ୍ଗବଂଶର ରାଜା ଅଗ୍ନି-ମିତ୍ରଙ୍କ ସମସାମୟିକ ଥିଲେ ।

—:o:—

## ଭବଭୂତି

ଆମ ଓଡ଼ିଶା ଦାକ୍ଷିଣାତ୍ୟରେ ଅଛି । ଓଡ଼ିଶାର ସମ୍ବଲପୁର ଜିଲ୍ଲାରେ ମହାନଦୀ କୂଳରେ ପଦ୍ମପୁର ଗୋଟିଏ ନଗର । ଭବଭୂତି ଏହି ପଦ୍ମପୁର ସହରରେ ଜନ୍ମିଥିଲେ ।

ଭାରତର ଜଣେ ପ୍ରସିଦ୍ଧ କବି ବାକ୍‌ପତିରାଜ କନୌଜ ଦରବାରର ଜଣେ ରାଜକବି ଥିଲେ । ୭୩୩ ଖ୍ରୀଷ୍ଟାବ୍ଦ ଆଡ଼କୁ ବୃଦ୍ଧାବେଳେ ଭବଭୂତି ବାକ୍‌ପତି ରାଜାଙ୍କ ସଙ୍ଗେ କିଛିକାଳ କନୌଜ ଦରବାରରେ କଟାଇଥିଲେ । ଏଥିରୁ ଜଣାପଡ଼େ ସେ ଖ୍ରୀଷ୍ଟ ସପ୍ତମ ଓ ଅଷ୍ଟମ ଶତାବ୍ଦୀର ଲୋକ ଥିଲେ ।

ଭବଭୂତିଙ୍କ ପିତା ନୀଳକଣ୍ଠ ଭଟ୍ଟ, ମାତା ଜାତୁକର୍ଣ୍ଣୀ (ଜାଣିକର୍ଣ୍ଣୀ) ଏବଂ ପିତାମହ ଗୋପାଳ ଭଟ୍ଟ । ଭବଭୂତିଙ୍କ ମୂଳ ନାମ ଶ୍ରୀକଣ୍ଠ, ଭବଭୂତି ଥିଲା ତାଙ୍କ ଗୃହୀତ ନାମ ବା ବିରୁଦ । ସେ ବେଦ, ବେଦାନ୍ତ, ଉପନିଷଦ, ସାଂଖ୍ୟ, ଯୋଗଦର୍ଶନ ଶବ୍ଦଶାସ୍ତ୍ରରେ ଅତି ପଣ୍ଡିତ ଥିଲେ ।

ଶ୍ରୀକଣ୍ଠଙ୍କ ପରିବାର ଥିଲେ ଯଜୁର୍ବେଦୀ, ତୈତ୍ତିରୀୟ ଶାଖାଧ୍ୟାୟୀ କାଶ୍ୟପଗୋତ୍ରୀ ବ୍ରାହ୍ମଣ । ସେହି ପରିବାରକୁ ଲୋକେ ଉଦୁମ୍ବର ପରିବାର ବୋଲି କହୁଥିଲେ । ଉଦୁମ୍ବର ପରିବାର ପଞ୍ଚାଗ୍ନି-ତାପ-ବ୍ରତ ଗ୍ରହଣ କରିଥିଲେ । ନିଜର ଚାରି ପଟେ ଅଗ୍ନି ଜାଳି ମୁଣ୍ଡରେ ସୂର୍ଯ୍ୟରଶ୍ମି ତାପ କରିବାକୁ ପଞ୍ଚାଗ୍ନି ତାପ କହନ୍ତି । ସେମାନେ କେବେ କେବେ ବାଜପେୟ (ବଳପାନ) ନାମକ ଯଜ୍ଞ ମଧ୍ୟ କରୁଥିଲେ ।

ଶ୍ରୀକଣ୍ଠ ଭବଭୂତି ଭାରତରେ ଜଣେ ଶ୍ରେଷ୍ଠ କବି । ସେ ଉତ୍ତର ରାମ ଚରିତ, ମାଳତୀ ମାଧବ ଓ ମହାବୀର ଚରିତ ନାମରେ ତିନି ଖଣ୍ଡ ନାଟକ (କାବ୍ୟ) ଲେଖିଛନ୍ତି । ଉତ୍ତର ରାମ ଚରିତରେ ଲେଖା କରୁଣ ରସରେ ପୂର୍ଣ୍ଣ । ତାହା ପଢ଼ିଲେ, ଚକ୍ଷୁରୁ ଲୋତକ ଖସିପଡ଼େ । ସେଥିରେ ରାମଚନ୍ଦ୍ରଙ୍କର ସୀତା ନିର୍ବାସନ କଥା ବର୍ଣ୍ଣିତ ଅଛି । ଏପରି କରୁଣ ହୃଦୟପୂର ତଥ୍ୟ କଥା ବର୍ଣ୍ଣନା ଓ ନିଗୂଢ଼ ଭାବ କାଳିଦାସଙ୍କ କବିତାରେ ମିଳେ ନାହିଁ ।

ଭବଭୂତିଙ୍କ କାବ୍ୟର ଶବ୍ଦ ଯୋଜନା ଓ ଅନୁପ୍ରାସ ଅତି ସୁନ୍ଦର । ପାହାଡ଼ିଆ ରାସ୍ତାରେ ଘୋଡ଼ା କଦମ ଚାଲରେ ଗଲେ ଯେପରି ଶବ୍ଦ ହୁଏ, ଭବଭୂତିଙ୍କ ଶ୍ଳୋକର ଶବ୍ଦଯୋଜନା ଅନୁପ୍ରାସ ତଦନୁରୂପ ପରି କାନକୁ ଶୁଭେ ।

କୂଜତ୍କୁଞ୍ଜକୁଟୀର କୌଶିକଘଟା ଘୁତ୍କାରବତ୍କୀଚକଃ ।<br>
ସ୍ତମ୍ବାଡମ୍ବରମୂକ ମୌକୁଲିକୁଳଃ କ୍ରୌଞ୍ଚାବତୋଽୟଂ ଗିରିଃ ।<br>
ଏତସ୍ମିନ୍ ପ୍ରଚଳାକିନାଂ ପ୍ରଚଳତାଂ ଉଦ୍‌ବେଜିତାଃ କୂଜିତୈଃ ।<br>
ଉଦ୍‌ବେଲ୍ଲନ୍ତି ପୁରାଣରୋହିଣୀତରୁସ୍କନ୍ଧେଷୁ କୁମ୍ଭୀନସାଃ ।

ଏହି ଶ୍ଳୋକର କ-ଅନୁପ୍ରାସ ଲକ୍ଷ୍ୟ କର ଏବଂ ବୃତ୍ତ ଧରି ଶ୍ଳୋକକୁ ବୋଲି ଦେଖ, କି ସୁନ୍ଦର ଶୁଭୁଛି ।

ଭବଭୂତିଙ୍କ ଶବ୍ଦଯୋଜନା କଠିନ ଓ ଭାବ ଗମ୍ଭୀର ଥିବାରୁ ତାଙ୍କ ସମୟର କେହି କେହି ପଣ୍ଡିତ ବୋଧହୁଏ ତାଙ୍କୁ ଅବଜ୍ଞା କରୁଥିଲେ । ସେ କଥା ଭବଭୂତି ଜାଣି ପାରିଥିଲେ । ସେଥିପାଇଁ ସେ କହନ୍ତି—

ଯେ ନାମ କେଚିଦିହ ନଃ ପ୍ରଥୟନ୍ତ୍ୟବଜ୍ଞାଂ,<br>
ଜାନନ୍ତି ତେ କିମପି ତାନ୍ ପ୍ରତି ନୈଷ ଯତ୍ନଃ ।<br>
ଉତ୍ପତ୍ସ୍ୟତେଽସ୍ତି ମମ କୋଽପି ସମାନଧର୍ମା,<br>
କାଳୋହ୍ୟୟଂ ନିରବଧିର୍ବିପୁଳା ଚ ପୃଥ୍ୱୀ ।

(କେହି କେହି ମୋର ଲେଖାକୁ ଅବଜ୍ଞାରେ ଦେଖନ୍ତି । ମୁଁ ଯାହା ଲେଖୁଛି, ସେମାନଙ୍କ ପାଇଁ ନୁହେଁ । କାଳ ଅନନ୍ତ, ପୃଥ୍ୱୀ ଅନନ୍ତ । କେଉଁଠି

କେବ୍ବ ହେଲେ ଥିବ ବା କେବେହେଲେ ଜନ୍ମିବ । ସେ ମୋର ଲେଖାକୁ ନିଶ୍ଚୟ ଆଦର କରିବ । )

ଭବଭୂତି ନିଜ ଲେଖାର ଉତ୍କର୍ଷ କଥା ଭଲ ରୂପେ ବୁଝିଥିଲେ । କହିବା ବାହୁଲ୍ୟ, ଅଳ୍ପ ଦିନ ମଧ୍ୟରେ ପଣ୍ଡିତମାନେ ତାଙ୍କ ନାଟକମାନଙ୍କୁ ଉଚ୍ଚ ସ୍ଥାନ ଦେଲେ । ଭବଭୂତି ଏବେ ଭାରତର ଜଣେ ଅତି ପ୍ରସିଦ୍ଧ କବି ।

ପଣ୍ଡିତମାନେ ଭବଭୂତିଙ୍କୁ କାଳିଦାସଙ୍କ ସଙ୍ଗେ ତୁଳନା କରି ଉଭୟଙ୍କ କାବ୍ୟର ଓ ରଚନାର ଉତ୍କର୍ଷ ଦେଖାନ୍ତି । କେତେକ ଦିଗରୁ କାଳିଦାସ ଶ୍ରେଷ୍ଠ ଏବଂ କେତେକ ଦିଗରୁ ଭବଭୂତି ଶ୍ରେଷ୍ଠ ।

କାଳିଦାସ ଓ ଭବଭୂତିଙ୍କ ଶ୍ରେଷ୍ଠତା ନେଇ ଆମ ଦେଶରେ କେତେକ ଗପ ତିଆରି ହୋଇଛି ।

(୧) ଥରେ କାଳିଦାସ ଓ ଭବଭୂତି 'ମୁଁ ବଡ଼' ବୋଲି କଳି କଲେ । ଦୁହେଁ ଗୋଟିଏ ପାନ ଦୋକାନକୁ ଗଲେ । ସେଠାରେ ଜଣେ ସ୍ତ୍ରୀଲୋକ ପାନ ବିକୁଥିଲା । ତାକୁ ଦୁହେଁ ପଚାରିଲେ, କାଳିଦାସ ବଡ଼ କବି କି ଭବଭୂତି ବଡ଼ କବି ? ସ୍ତ୍ରୀ ଲୋକ ଦୁହିଁଙ୍କି ଖିଲି ଏ ଲେଖାଁ ପାନ ଦେଲା । ଭବଭୂତିଙ୍କ ପାନରେ ଚୂନ ନ ଥାଏ ; କାଳିଦାସଙ୍କ ପାନରେ ଖଇର ନ ଥାଏ । ଭବଭୂତି କହିଲେ—

ଚୂର୍ଣ୍ଣମାମାସୃତାଂ ଚୂର୍ଣ୍ଣଂ ପୂର୍ଣ୍ଣଚନ୍ଦ୍ର ନିଭାନନେ ।
ପର୍ଣ୍ଣାନି ସ୍ୱର୍ଣ୍ଣବର୍ଣ୍ଣାନି ନର୍ଣ୍ଣ୍ୟନ୍ତାକର୍ଣ୍ଣ ଲୋଚନେ ।

କାଳିଦାସ କହିଲେ—

ବିନା ଖଦିରସାରେଣ ହାରେଣ ହରିଣୀ ଦୃଶାଂ ।
ନାଧରେ ଜାୟତେ ରାଗୋ ନାନୁରାଗଃ ପୟୋଧରେ ।

ସେଠୁଁ ସ୍ତ୍ରୀଟି କହିଲା, ଭବଭୂତିଙ୍କ ଅନୁପ୍ରାସ ସୁନ୍ଦର, ଭାବ ମଧ୍ୟ ଗମ୍ଭୀର, କିନ୍ତୁ କାଳିଦାସଙ୍କ ଶ୍ଳୋକ ସରଳ, ମଧୁର ଓ ଭାବପୂର୍ଣ୍ଣ ।

(୨) କାଳିଦାସ ଓ ଭବଭୂତି ଥରେ ସରସ୍ୱତୀଙ୍କୁ ନିଜ ମଧ୍ୟରୁ କିଏ ବଡ଼ ବୋଲି ପଚାରିଲେ । ସରସ୍ୱତୀ ସେମାନଙ୍କୁ ପରୀକ୍ଷା କରିବା ନିମନ୍ତେ ସମ୍ମୁଖରେ ପଡ଼ିଥିବା ଏକ କାଠ କଣ୍ଢ ନେଇ ରଚନା କରିବାକୁ କହିଲେ ।

ଭବଭୂତି କହିଲେ—

ଶୁଷ୍କଂ କାଷ୍ଠଂ ତିଷ୍ଠତ୍ୟଗ୍ରେ ।

ସେହି ପାଦ ପୂରଣ କରି କାଳିଦାସ କହିଲେ—

ନୀରସତରୁବର ପୁରତୋଭାତି ।

ଏସବୁ କାଳ୍ପନିକ ଗଳ୍ପ । କାରଣ, କାଳିଦାସଙ୍କ ଆଠଶହ ବର୍ଷ ପରେ ଭବଭୂତି ଥିଲେ । ଯାହାହେଉ, ଏଥିରୁ ଜଣାପଡ଼େ ଯେ, ଭବଭୂତି କାଳିଦାସଙ୍କ ସଙ୍ଗେ ସମକକ୍ଷ ହେବାକୁ ସକ୍ଷମ ।

—:O:—

## ରବୀନ୍ଦ୍ରନାଥ ଠାକୁର

କଲିକତା ନଗରୀରେ ଦେବେନ୍ଦ୍ରନାଥ ଠାକୁର ନାମରେ ଜଣେ ବିଖ୍ୟାତ ବ୍ୟକ୍ତି ଥିଲେ । ସେ ଜଣେ ଅତି ବିଦ୍ୱାନ୍ ମହାପୁରୁଷ ଥିଲେ ଏବଂ ଉପନିଷଦ ଓ ଦର୍ଶନରେ ତାଙ୍କର ଗଭୀର ପ୍ରବେଶ ଥିଲା । ତେଣୁ ଲୋକେ ତାଙ୍କୁ ମହର୍ଷି ଦେବେନ୍ଦ୍ରନାଥ ବୋଲି କହୁଥିଲେ ।

ରବୀନ୍ଦ୍ରନାଥ ଠାକୁର ଏହି ମହର୍ଷିଙ୍କ କନିଷ୍ଠ ପୁତ୍ର । ରବୀନ୍ଦ୍ରନାଥ ୧୮୬୧ ଖ୍ରୀଷ୍ଟାବ୍ଦରେ କଲିକତା ନଗରୀରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଜଣେ ଅତି ଧନୀ ଜମିଦାର ଥିଲେ । ତେଣୁ ପିଲାଦିନୁ ରବୀନ୍ଦ୍ରନାଥ ପିତାଙ୍କର କଠୋର ଶାସନ ମଧ୍ୟରେ ବଢ଼ିଥିଲେ । ଗୃହରେ ଚାକରବାକର-ମାନେ ରବୀନ୍ଦ୍ରଙ୍କୁ ଘର ବାହାରକୁ ଛାଡ଼ି ଦେଉ ନ ଥିଲେ । ସେମାନଙ୍କ ସଙ୍ଗେ ରହି ରବୀନ୍ଦ୍ର ଅକ୍ଷର ଶିକ୍ଷା କରିଥିଲେ । ଚାକରମାନେ ପଢ଼ୁଥିବା ବହିମାନ ପଢ଼ୁଥିଲେ । ସେ କାଶୀଦାସଙ୍କ ରାମାୟଣ ପଢ଼ିବାକୁ ଭାରି ଭଲ ପାଉଥିଲେ ।

ରବୀନ୍ଦ୍ରନାଥ ସ୍କୁଲରେ ଭର୍ତ୍ତି ହୋଇଥିଲେ, କିନ୍ତୁ ସ୍କୁଲ ତାଙ୍କୁ ଜେଲଖାନା ପରି ମନେହୁଏ । ସେ ସ୍କୁଲ ଛାଡ଼ିଥିଲେ, ପରୀକ୍ଷା ଦେଇ ନ ଥିଲେ, ଶିକ୍ଷକ ତାଙ୍କ ଭବିଷ୍ୟ ଜୀବନ ସମ୍ବନ୍ଧରେ ନୈରାଶ୍ୟବାଣୀ

ଶୁଣାଉଥିଲେ । ତାଙ୍କ ପିତା ଘରେ ଶିକ୍ଷକ ଓ ସଙ୍ଗୀତ ଶିକ୍ଷକ [illegible] ରଖିଥିଲେ ।



( ରବୀନ୍ଦ୍ର ନାଥ )

ରବୀନ୍ଦ୍ର କିନ୍ତୁ କୌଣସି ଶାସନ ମାନନ୍ତି ନାହିଁ । ବୃକ୍ଷ[illegible], ପଶୁପକ୍ଷୀ, ଶ୍ୟାମଧରା ଓ ନୀଳଗଗନର ଶୋଭା ଦେଖିବାକୁ ତାଙ୍କର ବଡ଼ ଆଗ୍ରହ । ଘରର ଛାତ ଉପରକୁ ଚାଲିଯାଇ ଛାତ ଉପରେ ନିବିଷ୍ଟ ମନରେ କଣ ସବୁ ଦେଖୁଥାନ୍ତି ଓ ଭାବୁଥାନ୍ତି ।

ଦେବେନ୍ଦ୍ରନାଥ ସାଧାରଣତଃ ହିମାଳୟରେ ରହୁଥାନ୍ତି । ବଡ଼ ଭାଇ ଘରେ ରବୀନ୍ଦ୍ରଙ୍କ ଉପରେ ସେପରି କିଛି କଠୋର ଦୃଷ୍ଟି ଦିଅନ୍ତି ନାହିଁ । ରବୀନ୍ଦ୍ର ଗୋଟିଏ ଘରକୋଣରେ ବସି ଜାନକୁଜା, ମାରବ ନିଷ୍ଠିଅଳ ଭାବରେ ଭାବୁଥିବାର ଦେଖି ବଡ଼ଭାଇ କହି ପକାନ୍ତି, ରବୀନ୍ଦ୍ର ଫିଲଜଫାର (ଦାର୍ଶନିକ) ହେବ ।

ରବୀନ୍ଦ୍ରଙ୍କ ଗୃହ ପୁରାଣ, ଦର୍ଶନ, ଉପନିଷଦର ଏକ ସମାବେଶର ସ୍ଥାନ ଥିଲା । ଦେବେନ୍ଦ୍ରନାଥ ଘରେ ଶାନ୍ତ ସମାହିତ ଉପାସନାର ପ୍ରବର୍ତ୍ତନ କରିଥିଲେ । ପିଲାମାନେ ବିଶୁଦ୍ଧ ଉଚ୍ଚାରଣ ସହ ପ୍ରତିଦିନ ଉପନିଷଦର ଶ୍ଲୋକମାନ ଆବୃତ୍ତି କରୁଥିଲେ ।

ରବୀନ୍ଦ୍ରଙ୍କ ଗୃହରେ ବିଦ୍ୟା ଓ ଶିକ୍ଷାର ଗୋଟିଏ ବାୟୁମଣ୍ଡଳ ଥିଲା । ତାଙ୍କ ସବା ବଡ଼ଭାଇ ଜଣେ ଜଜ୍ । ତାଙ୍କର ଏକ ବଡ଼ ପାଠାଗାର ଥିଲା, ସେଥିରେ ସଂସ୍କୃତ, ଇଂରାଜୀ, ବଙ୍ଗଳାର ନାନାପ୍ରକାର ଗ୍ରନ୍ଥ ଥିଲା । ରବୀନ୍ଦ୍ର ବିଭିନ୍ନ ପୁସ୍ତକ ନେଇ ଅଭିଧାନ (ଡିକ୍‌ସନାରୀ) ସାହାଯ୍ୟରେ ସେଗୁଡ଼ିକ ନିଜେ ନିଜେ ପଢ଼ି ପକାଇ ଥିଲେ । ରବୀନ୍ଦ୍ର ସ୍କୁଲରେ ପଢ଼ାପଢ଼ି ଭଲ କରି ନ ଥିଲେ ସତ୍ୟ, କିନ୍ତୁ ସ୍ୱାଧ୍ୟାୟ ଓ ସ୍ୱାଧୀନ ଚିନ୍ତା ମାର୍ଗରେ ଜଣେ ବିଦ୍ୱାନ୍ ହେବାକୁ ସମର୍ଥ ହୋଇଥିଲେ । ସ୍କୁଲରେ ଗତାନୁଗତିକ ମାର୍ଗ ଶିକ୍ଷା ପଦ୍ଧତିରେ ମନୁଷ୍ୟର ବିକାଶରେ ବାଧା ଘଟେ । ରବୀନ୍ଦ୍ରଙ୍କ ସ୍ୱାଧ୍ୟାୟ ମାର୍ଗରେ ତାଙ୍କ ମନୀଷା ଓ ପ୍ରତିଭାର ସ୍ୱାଭାବିକ ବିକାଶ ସୁଗମ ହୋଇଥିଲା ।

କେବଳ ସେତିକି ନୁହଁ, ରବୀନ୍ଦ୍ରଙ୍କ ଗାର୍ହସ୍ଥ୍ୟ ବାୟୁମଣ୍ଡଳ ଉଚ୍ଚଚିନ୍ତା ଓ ଦେଶପ୍ରେମର ଗୋଟିଏ ଜନ୍ମ ଥିଲା । ତାଙ୍କ ଗୁରୁଜନମାନେ ଇଂରାଜୀ ସାହିତ୍ୟ ଓ ସାଧନା ପଥର ପଥିକ ଥିଲେ । ସେକସ୍‌ପିୟର, ସ୍କଟ ପ୍ରମୁଖଙ୍କ କାବ୍ୟ କବିତା ନାଟକର ଆଲୋଚନାରେ ଗୃହଟି ଆନ୍ଦୋଳିତ ହେଉଥିଲା । ରଙ୍ଗଲାଲଙ୍କ "ସ୍ୱାଧୀନତା-ହୀନତାୟ କେ ବାଁଚିତେ ଚାୟରେ", ହେମଚନ୍ଦ୍ରଙ୍କ "ବିଂଶତି କୋଟି ମାନବେର ବାସ", ରବୀନ୍ଦ୍ରଙ୍କ ନିଜ ଭାଇମାନଙ୍କ "ଜୟ ଭାରତ ଜୟ", "ଲଜ୍ଜାୟ ଭାରତ ଯଶ ଗାଇବ କି ରେ", "ମଳିନ ମୁଖଚନ୍ଦ୍ରମା ଭାରତ ତୋମାର" ପ୍ରଭୃତି ସଙ୍ଗୀତରେ ମୂର୍ଚ୍ଛନାରେ ଗୃହର ବାୟୁମଣ୍ଡଳ ଉଦ୍‌ବେଳିତ ହେଉଥିଲା ।

ରବୀନ୍ଦ୍ରଙ୍କ ଅନ୍ୟତମ ଜଣେ ଭାଇ ଗୋଟିଏ ପୋଡ଼ାକୋଠିରେ ଏକ ଗୁପ୍ତ ସଭା ସ୍ଥାପନ କରିଥିଲେ । ସେଠାରେ ଥିଲା ଋଗ୍‌ବେଦର ପୋଥି, ମଲା ମଣିଷର ମୁଣ୍ଡର କଙ୍କାଳ ଓ ଆଉ କେତୋଟି ତଲୱାର । ସେହି ଗୁପ୍ତ ଅନୁଷ୍ଠାନରେ ରବୀନ୍ଦ୍ର ନେଇଥିଲେ ଭାରତ-ଉଦ୍ଧାର ଦୀକ୍ଷା ।

ଏ ପ୍ରକାର ନାନା ପ୍ରେରଣା, ଆକାଂକ୍ଷା ଓ ଉତ୍ସାହ ମଧ୍ୟରେ ରବୀନ୍ଦ୍ରନାଥ ଆବିଷ୍କାର କରିଥିଲେ କବିତାର ଛନ୍ଦ ମିଳାଇବା । ତାଙ୍କ ବାରବର୍ଷର ପିଲା, ଗୋଟିଏ ଘରକୋଣରେ, ସ୍କୁଲ ବା ସମାଜର ଶାସନ ନ ମାନି, ସ୍ୱାଧୀନ ଚିନ୍ତା, ଅକ୍ଳାନ୍ତ ଉତ୍ସାହ ଫଳରେ ଗଢ଼ିଥିଲେ ପୃଥିବୀର 'ଭାବୀ ବିଶ୍ୱକବି' ହେବାକୁ ।

ସହଜ ମନସ୍ୱୀ ରବୀନ୍ଦ୍ରନାଥଙ୍କ ବାଲ୍ୟକାଳର ସ୍ୱାଧୀନ ମନୋବୃତ୍ତି ବା ସ୍ୱୈରବୃତ୍ତିତା ଅସ୍ଥିମଜ୍ଜାଗତ ହୋଇଥିଲା । ଯୌବନରେ ସେ ଯେତେ-ବେଳେ କବିତା ପ୍ରଣୟନରେ ଲାଗିଲେ, ସେହି ସ୍ୱୈରବୃତ୍ତିତା କବିତାରେ ଉଚ୍ଛୃଙ୍ଖଳ ବେଗରେ ଛୁଟିଲା । ଛନ୍ଦରେ, ଭାବରେ ତାହା ବାସ୍ତବତା ନ ମାନି ଏକ ନୂତନ ଶୈଳୀର ସୂତ୍ରପାତ କଲା । ଜଗତରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କର ନୂତନ ଶୈଳୀ "ରବୀନ୍ଦ୍ର ସ୍କୁଲ" ବା "ରବୀନ୍ଦ୍ର ଶୈଳୀ" ନାମରେ କଥିତ ହେଲା ।

ଧର୍ମର ସନ୍ତାନ ରବୀନ୍ଦ୍ରନାଥ ପିତାଙ୍କ ସଙ୍ଗେ ହିମାଳୟକୁ ଯାଇ ହିମାଳୟର ଅନେକ ଆଖପାଖ ଅଞ୍ଚଳ ବୁଲି ଦେଖିଥିଲେ ; ଉତ୍ତର ଭାରତର ଅନେକ ପ୍ରସିଦ୍ଧ ସ୍ଥାନ ପରିଦର୍ଶନ କରିଥିଲେ । ଭ୍ରାତାଙ୍କ ସଙ୍ଗେ ବିଲାତ ଯାଇଥିଲେ । ପୃଥିବୀର ବିଭିନ୍ନ ଦେଶ ମଧ୍ୟ ଏକାଧିକ ଥର ବୁଲି ଦେଖିଥିଲେ । ସେ ଏହି ସବୁ ଦେଶ ଭ୍ରମଣରୁ ଅନେକ କିଛି ଜ୍ଞାନ ଅର୍ଜନ କରିଥିଲେ ।

ରବୀନ୍ଦ୍ରନାଥ ଦଶ ବାରବର୍ଷରେ କବିତା ଲେଖିବା ପ୍ରତି ମନ ବଳାଇ ଥିଲେ । ତାଙ୍କ ପ୍ରାଥମିକ ରଚନାମାନ 'ଜ୍ଞାନାଙ୍କୁର', 'ପ୍ରତିବିମ୍ବ' ଓ 'ଭାରତୀ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ଯେତେବେଳେ ନିଜ ଲେଖା-ମାନ ଛପାହୋଇ ବାହାରିଲା, ରବୀନ୍ଦ୍ରଙ୍କ ଉତ୍ସାହ, ଆନନ୍ଦ, ସୀମା ମାନିଲା

ନାହିଁ । ତାଙ୍କର ପ୍ରଥମ କାବ୍ୟ 'କବି କାହିନୀ' ଭାରତୀ ପତ୍ରିକାରେ ପ୍ରକାଶିତ ହୋଇଥିଲା ।

ସେତେବେଳେ ଭାରତ ଇଂରାଜୀ ଶାସନ ତଳେ ପରାଧୀନତାର ଘୋର ଦୁରବସ୍ଥା ଭୋଗୁଥିଲା । ବିଶେଷତଃ ଲର୍ଡ କର୍ଜନଙ୍କ ଅମଳରେ ବଙ୍ଗଳା ଦୁଇ ଭାଗରେ ବିଭକ୍ତ ହୋଇ ବଙ୍ଗବାସୀଙ୍କ ପ୍ରାଣରେ ବିଶେଷ ଆଘାତ ଦେଇଥିଲା । ବଙ୍ଗଳାର ସ୍ୱଦେଶୀ ଆନ୍ଦୋଳନ ଏକ ଉଗ୍ରରୂପ ଧାରଣ କରିଥିଲା । ରବୀନ୍ଦ୍ରନାଥଙ୍କ କବିତାରେ ଆନ୍ଦୋଳନର ରୂପରେଖା ସେତେବେଳେ ମୂର୍ତ୍ତିମାନ ହେଲା, ତାଙ୍କ କବିତା ଦେଶରେ ଲୋକପ୍ରିୟ ହୋଇଉଠିଲା ।

ରବୀନ୍ଦ୍ରନାଥ ଇଂରାଜୀ ସରକାରଙ୍କ ପ୍ରତିଷ୍ଠିତ ସ୍କୁଲ କଲେଜ ଶିକ୍ଷାକୁ ପସନ୍ଦ କରୁନଥିଲେ । ଭାରତୀୟ ଆଦର୍ଶର ପ୍ରାଚୀନ ଆଶ୍ରମଶିକ୍ଷା ଓ ଆଧୁନିକ ବିଶ୍ୱସଂସ୍କୃତିର ମିଶ୍ରଣରେ ସେ ଏକ ଉନ୍ନତ ଶିକ୍ଷା ପ୍ରଣାଳୀର ପ୍ରବର୍ତ୍ତନ କଳ୍ପନା କରିଥିଲେ । ୧୯୦୧ ଖ୍ରୀଷ୍ଟାବ୍ଦରେ ସେ ଏହି ନୂଆ ପ୍ରକାର ଶିକ୍ଷାର ଆଦର୍ଶବିଦ୍ୟାଳୟର ପ୍ରଚଳନ ନିମନ୍ତେ କଲିକତା ନିକଟବର୍ତ୍ତୀ ଏକ ମଫସଲ ଅଞ୍ଚଳରେ 'ବୋଲପୁର ଶାନ୍ତି ନିକେତନ' ପ୍ରତିଷ୍ଠା କରିଥିଲେ । ଆଦର୍ଶ ନାଗରିକ ଗଠନ ଶାନ୍ତିନିକେତନର ଲକ୍ଷ୍ୟ-ଥିଲା ଏବଂ ସେହି ଲକ୍ଷ୍ୟ ସାଧନ ନିମନ୍ତେ ସେଠା ଶିକ୍ଷାପ୍ରଣାଳୀ ଗଠିତ ହୋଇଥିଲା । ଏହି ଶିକ୍ଷାପ୍ରଣାଳୀ ମହାତ୍ମାଗାନ୍ଧିଙ୍କ ମନକୁ ବିଶେଷ ପାଇଲା । ସେ ଉଚ୍ଚସ୍ୱରରେ ତାହାର ସାଧୁବାଦ କଲେ ଏବଂ ରବୀନ୍ଦ୍ରନାଥଙ୍କୁ ଗୁରୁଦେବ ବୋଲି କହିଲେ । ରବୀନ୍ଦ୍ରନାଥ ୧୯୨୧ରେ ଶାନ୍ତିନିକେତନ ନାମ ବଦଳାଇ ଅନୁଷ୍ଠାନର ନାମ 'ବିଶ୍ୱଭାରତୀ' ରଖିଲେ । ଏଠାରେ ଏବେ କେବଳ ବଙ୍ଗଳାର ନୁହେଁ ସମଗ୍ର ଭାରତର ଏବଂ ପୃଥିବୀର ବିଭିନ୍ନ ଦେଶର ଛାତ୍ରମାନେ ଅଧ୍ୟୟନ କରୁଛନ୍ତି ଏବଂ ସେଠାରେ ବିଭିନ୍ନ ବିଷୟରେ ଗବେଷଣା ମଧ୍ୟ ହେଉଛି । ବିଶ୍ୱଭାରତୀ ଅଧୁନା ସାରା ପୃଥିବୀରେ ଖ୍ୟାତି ଲାଭ କରିଛି ।

ବିଶ୍ୱଭାରତୀ ପ୍ରତିଷ୍ଠା ସଙ୍ଗେ ରବୀନ୍ଦ୍ରନାଥଙ୍କ ବିଶ୍ୱପ୍ରସିଦ୍ଧ ରଚନା 'ଗୀତାଞ୍ଜଳି' ମୁଦ୍ରିତ ହୋଇଥିଲା । ଭାରତୀୟ ଦର୍ଶନ ଓ ଧର୍ମସଂସ୍କୃତି

ଉପରେ ଲିଖିତ କେତେଗୁଡ଼ିଏ କବିତାର ଏହା ସଂଗ୍ରହ । ରବୀନ୍ଦ୍ରନାଥ ନିଜେ ସେହି କବିତାମାନ ଇଂରାଜୀରେ ଅନୁବାଦ କରିଛନ୍ତି । ଗୀତାଞ୍ଜଳିର ଇଂରାଜୀ ଅନୁବାଦକୁ ଇଂଲଣ୍ଡର ଭାରତସମିତି ପ୍ରକାଶ କରିଥିଲେ । ପ୍ରସିଦ୍ଧ ଇଂରାଜୀ କବି ୟେଟସ ସେହି ଅନୁବାଦ ପଢ଼ି ଗୀତାଞ୍ଜଳିର ଉଚ୍ଚ ପ୍ରଶଂସା କରିଥିଲେ । ଏଥିରେ ରବୀନ୍ଦ୍ରନାଥଙ୍କ ଯଶ ଇଂଲଣ୍ଡରେ ବ୍ୟାପିଲେ ଏବଂ ଇଂଲଣ୍ଡରୁ କ୍ରମେ ସାରା ପୃଥିବୀରେ ପ୍ରସାରିତ ହେଲା ।

ସୁଇଡେନ ଦେଶରେ ଆଲଫ୍ରେଡ଼ ନୋବେଲ ନାମରେ ଜଣେ ପ୍ରସିଦ୍ଧ ବୈଜ୍ଞାନିକ ଥିଲେ । ସେ ୧୮୮୩ରେ ଜନ୍ମଗ୍ରହଣ କରିଥିଲେ । ସେ ତାଙ୍କ ଜୀବନର ସମଗ୍ର ଉପାର୍ଜନ ଜନହିତ ସକାଶେ ଦାନ କରିଥିଲେ । ତାଙ୍କ ଦାନର ସୁଧରୁ ପ୍ରତିବର୍ଷ ପାଞ୍ଚଟି ପୁରସ୍କାର ଦିଆଯାଏ । ପୃଥିବୀର ଯେ କୌଣସି ଶ୍ରେଷ୍ଠବ୍ୟକ୍ତି ଏହି ପୁରସ୍କାରମାନ ପାଆନ୍ତି । ସାହିତ୍ୟ, ବିଜ୍ଞାନ ଓ ବିଶ୍ୱଶାନ୍ତି ଉଦ୍ଦେଶ୍ୟରେ ପୁରସ୍କାରମାନ ଘୋଷଣା କରାଯାଏ । ନୋବେଲଙ୍କ ନାମାନୁସାରେ ପୁରସ୍କାରକୁ ନୋବେଲ ପ୍ରାଇଜ୍ କୁହାଯାଏ । ଶ୍ରେଷ୍ଠବ୍ୟକ୍ତି ବାଛିବା ନିମନ୍ତେ ଏକ ନୋବେଲ ପ୍ରାଇଜ କମିଟି ଅଛି ।

ନୋବେଲ କମିଟି ୧୯୧୩ରେ ରବୀନ୍ଦ୍ରଙ୍କ ଗୀତାଞ୍ଜଳିକୁ ପୃଥିବୀର ଶ୍ରେଷ୍ଠ ସାହିତ୍ୟିକ ଦାନ ବୋଲି ଘୋଷଣା କରିଥିଲେ । ୧୯୩୦ରେ ମାନ୍ଦ୍ରାଜର ଚନ୍ଦ୍ରଶେଖର ଭେଙ୍କଟରମଣ ବିଜ୍ଞାନ ପାଇଁ ନୋବେଲ ପ୍ରାଇଜ ପାଇଥିଲେ ।

ରବୀନ୍ଦ୍ରନାଥ ଜୀବନର ଚରମକାଳ ବିଶ୍ୱଭାରତୀ ଅନୁଷ୍ଠାନରେ ରହି ସାହିତ୍ୟ ସାଧନାରେ ଯାପନ କରିଥିଲେ । ସେ ୧୯୪୧ରେ ସ୍ୱର୍ଗପ୍ରୟାଣ କରିଥିଲେ । ରବିଠାକୁର ବଙ୍ଗଳାର କବି ନୁହନ୍ତି, ସେ ଭାରତର କବି ନୁହନ୍ତି, ସେ ସମଗ୍ର ବିଶ୍ୱର କବି । ସମଗ୍ର ବିଶ୍ୱର ଜନତା ତାଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛନ୍ତି ।

ରବୀନ୍ଦ୍ରନାଥ ଯେ କେବଳ କବିତା ଲେଖିଛନ୍ତି ତାହା ନୁହେଁ । ତାହାଙ୍କର ସିଦ୍ଧହସ୍ତରୁ ସୁନ୍ଦର ଚିରସୁନ୍ଦର ଗଳ୍ପ, ଉପନ୍ୟାସ ଓ ନାଟକ ମଧ୍ୟ ବାହାରିଛି । ତାଙ୍କର କୌଣସି ପ୍ରକାର ରଚନାର ଜଗତରେ ତୁଳନା ନାହିଁ । ତାଙ୍କ ରଚନା ଜନତା ମନରେ ନିତ୍ୟ ଚିରଆନନ୍ଦ ଢାଳି ଦେଉଛି ।

ସାହିତ୍ୟରେ ମାନବର ଅନୁରାଗ ସୃଷ୍ଟି ଯଦି କବି ପ୍ରତିଭାର ପ୍ରକୃତ ମାନଦଣ୍ଡ ହୁଏ, ତେବେ ଆମର କବି 'ରବିଠାକୁର' ସେହି ମାନଦଣ୍ଡରେ ମାପିବାର ଶ୍ରେଷ୍ଠ ନିଦର୍ଶନ ଏବଂ ସେ 'ବିଶ୍ୱକବି' ବୋଲି ପରିଚିତ ହେବାକୁ ପ୍ରକୃତରେ ଯୋଗ୍ୟ ।

—:o:—

## କମ୍ବୁଶଙ୍କର

କାଶୀ ବା ବାରାଣସୀ ଭାରତରେ ପୁରାଣ ପ୍ରସିଦ୍ଧ ବିଦ୍ୟାନଗରୀ । ଏହା ସଂସ୍କୃତ ସାହିତ୍ୟର ପୀଠ ରୂପେ ଯୁଗ ଯୁଗ ଧରି ସମଗ୍ର ଭାରତକୁ ପ୍ରେରଣା ଓ ନେତୃତ୍ୱ ଦେଇ ଆସିଅଛି । ପ୍ରାଚୀନ ଯୁଗରୁ ଏଠାରେ ବିଶ୍ୱବିଦ୍ୟାଳୟମାନ ରହିଆସିଅଛି । ସମଗ୍ର ଭାରତରୁ ଶିକ୍ଷାର୍ଥୀମାନେ ନାନା ବିଦ୍ୟା ଆଲୋଚନା ନିମନ୍ତେ ଏଠାକୁ ଆସିବାକୁ ଲାଳସା ପ୍ରକାଶ କରି-ଆସିଛନ୍ତି । କାଶୀରୁ ଉତ୍ତୀର୍ଣ୍ଣ ଛାତ୍ରମାନେ ସ୍ୱଭାବତଃ ସମଗ୍ର ଭାରତରେ ଆଦର ଓ ସମ୍ମାନ ପାଇଥାନ୍ତି ।

କାଶୀ ଭାରତର ମାତାରୂପିଣୀ ପୁରାଣପବିତ୍ରା ଗଙ୍ଗାନଦୀର କୂଳରେ ଅବସ୍ଥିତ, ଦେବଦେବ ବିଶ୍ୱନାଥଙ୍କ ମନ୍ଦିର ବକ୍ଷରେ ଧାରଣ କରିଛି । ଏହି ଦୁଇ କାରଣରୁ କାଶୀ ଭାରତର ଏକ ପ୍ରଧାନ ପୁଣ୍ୟକ୍ଷେତ୍ର ରୂପେ ଯୁଗେ ଯୁଗେ ବିଖ୍ୟାତ ।

ଚିରାଗତ ସଂସ୍କୃତି ଓ ଖ୍ୟାତି ନିମନ୍ତେ କାଶୀ ସ୍ୱଭାବତଃ ପଣ୍ଡିତ ଓ ବିଦ୍ୟାପ୍ରେମୀମାନଙ୍କର ନିବାସସ୍ଥଳୀ ରୂପେ ପରିଚିତ । ବହୁ ବିଦ୍ୱାନଙ୍କ ଅବସ୍ଥାନ ଯୋଗୁ ସ୍ୱଭାବତଃ କାଶୀରେ ବିଦ୍ୟାର ଆଲୋଚନା ସୁଗମ ହୋଇଥାଏ । ପାରିପାର୍ଶ୍ୱିକ ବାୟୁମଣ୍ଡଳ ଧୀମାନ୍‌ଲୋକଙ୍କର ବିଦ୍ୟାଲୋଚନା ଓ ବୁଦ୍ଧି ବିକାଶକୁ ମାର୍ଗ ଦେଖାଇଦିଏ ।

ପୁରାଣପ୍ରସିଦ୍ଧ ଓ ଶିକ୍ଷାସଂସ୍କୃତିର କେନ୍ଦ୍ର ଏହି କାଶୀ ନଗରୀରେ ୧୮୮୯ ଖ୍ରୀଷ୍ଟାବ୍ଦରେ ଜଣେ ବିଚକ୍ଷଣ ଧୀଶକ୍ତି ସମ୍ପନ୍ନ କ୍ଷଣଜନ୍ମା ସ୍ୱଭାବକବି

ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପିତା ସପନ ସାହୁ କାଶୀର ଜଣେ ପ୍ରସିଦ୍ଧ ଓ ଧର୍ମବ୍ୟକ୍ତି ଥିଲେ । ସନ୍ତାନ ପୁତ୍ରର ନାମ ରଖିଥିଲେ 'ଜୟଶଙ୍କର' । କବିରୂପେ ସାହିତ୍ୟ କ୍ଷେତ୍ରରେ ଜୟଶଙ୍କରପ୍ରସାଦ ନାମରେ ଖ୍ୟାତି ଲାଭ କରିଛନ୍ତି । ସେ ହିନ୍ଦୀ ସାହିତ୍ୟ ତଥା କାବ୍ୟ ଜଗତରେ ଏକ ନୂଆ ଯୁଗର ପ୍ରବର୍ତ୍ତନ କରିଥିଲେ । ତାଙ୍କ ପ୍ରବର୍ତ୍ତିତ ନୂତନ ଶୈଳୀ ହିନ୍ଦୀସାହିତ୍ୟ କ୍ଷେତ୍ରରେ "ପ୍ରସାଦଶୈଳୀ" ପ୍ରସାଦସ୍କୁଲ) ନାମରେ ପରିଚିତ ହୋଇଅଛି । ପ୍ରସାଦଜୀଙ୍କ ଯୋଗୁଁ ହିନ୍ଦୀ ସାହିତ୍ୟରେ ପ୍ରବନ୍ଧ, କବିତା, ନାଟକ ଓ କଥା-ସାହିତ୍ୟ ପ୍ରାଚୀନ ଯୁଗଧାରା ଛାଡ଼ି ଏକ ବିପ୍ଳବ ସୃଷ୍ଟି କଲା । ପ୍ରସାଦଜୀ ଯୁଗସ୍ରଷ୍ଟା ରୂପେ ବିଖ୍ୟାତ ହେଲେ ।

ଯୁଗସ୍ରଷ୍ଟା ଜୟଶଙ୍କର ଉଚ୍ଚଶିକ୍ଷା ପାଇ ନ ଥିଲେ । ସେ ହାଇସ୍କୁଲର ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲେ । ସେ ଘରେ ସ୍ୱାଧୀନ ଭାବରେ ଇଂରାଜୀ, ହିନ୍ଦୀ ଓ ଉର୍ଦ୍ଦୁ ସାହିତ୍ୟ ଆଲୋଚନା କରି ତହିଁରେ କୃତିତ୍ୱ ହାସଲ କରିଥିଲେ । ପରନ୍ତୁ ସେ କାଶୀର ବିଖ୍ୟାତ ପଣ୍ଡିତ ଓ କବିମାନଙ୍କର ସଂସର୍ଗରେ ଆସି ଉଚ୍ଚକୋଟିର ସାହିତ୍ୟ ସୃଜନ ନିମନ୍ତେ ସୁଯୋଗ ଓ ପ୍ରେରଣା ପାଇଥିଲେ ।

ବେଷ୍ଟନୀ ଓ ସଂସର୍ଗର ପ୍ରଭାବରେ ତଥା ସ୍ୱାଭାବିକ ବିଚକ୍ଷଣ ଧୀମତା ଯୋଗୁଁ ବାଲ୍ୟକାଳରୁ ପ୍ରସାଦଜୀଙ୍କର କବିତା ରଚନା ପ୍ରତି ସ୍ପୃହା ଜାତ ହୋଇଥିଲା । ସେ ପନ୍ଦର ବର୍ଷ ବୟସରେ କବିତା ଲେଖିବା ଆରମ୍ଭ କରିଥିଲେ । ୧୯୦୬ ଖ୍ରୀଷ୍ଟାବ୍ଦରେ ଅର୍ଥାତ୍ ସତର ବର୍ଷ ବୟସରେ ତାଙ୍କ କବିତା 'ଭାରତେନ୍ଦୁ' ନାମକ ମାସିକପତ୍ରରେ ପ୍ରଥମେ ପ୍ରକାଶିତ ହୋଇଥିଲା । ଏହା ପରେ ସେ ନିଜ ପ୍ରଣୀତ କବିତା, ପ୍ରବନ୍ଧ, ଉପନ୍ୟାସ ଓ ନାଟକ ନିୟମିତ ଭାବରେ 'ଇନ୍ଦୁ' ନାମକ ମାସିକ ପତ୍ରରେ ପ୍ରକାଶ କରିବାକୁ ଲାଗିଲେ ।

ପ୍ରସାଦଜୀଙ୍କ ସହଜ ପ୍ରତିଭା କ୍ରମେ ତାଙ୍କ କବିତା, ପ୍ରବନ୍ଧ, ଉପନ୍ୟାସ ଓ ନାଟକ ରଚନାରେ ଫୁଟି ଉଠିଲା । ସେ ଅଚିରେ ହିନ୍ଦୀସାହିତ୍ୟର ସବୁ କ୍ଷେତ୍ରରେ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କଲେ । ଉପନ୍ୟାସ କ୍ଷେତ୍ରରେ ମୌଳିକ ଲେଖକ କେହି ନ ଥିବା ସମୟରେ ସେ ୧୯୧୧ ମସିହା ବେଳକୁ ଜଣେ ଅବିସମ୍ବାଦିତ ଶ୍ରେଷ୍ଠ ମୌଳିକ ଉପନ୍ୟାସ

ଲେଖକ ରୂପେ ହିନ୍ଦୀ ସାହିତ୍ୟ ଜଗତରେ ନିଜ ପ୍ରତିଷ୍ଠାର ବିଜ୍ଞାପନ ଦେଲେ । ସେ ହିନ୍ଦୀର ସର୍ବଶ୍ରେଷ୍ଠ ନାଟକ ଲେଖକ ।

ସେହିପରି ଜୟଶଙ୍କରଙ୍କ ଖ୍ୟାତି ହିନ୍ଦୀ ସାହିତ୍ୟରେ କାବ୍ୟର ଯୁଗସ୍ରଷ୍ଟା ଓ ସର୍ବମାନ୍ୟ ଶ୍ରେଷ୍ଠ କବି ରୂପେ ବିଶେଷ ରୂପେ ପ୍ରତିଷ୍ଠିତ ହୋଇଅଛି । ଆଧୁନିକ କବିମାନେ ତାଙ୍କର ଶୈଳୀ ଅନୁସରଣ କରି କାବ୍ୟକବିତାରେ ଏକ ନୂଆ ଯୁଗ ପ୍ରବର୍ତ୍ତନ କରିଛନ୍ତି । ଏହି ଶ୍ରେଣୀର କବିମାନେ 'ପ୍ରସାଦଶୈଳୀ' ( ପ୍ରସାଦସ୍କୁଲ୍ ) ଲେଖକ ରୂପେ ବର୍ତ୍ତମାନ ପରିଚିତ ହେଉଛନ୍ତି । ଭାରତର ବଙ୍ଗଳା କାବ୍ୟ ଜଗତରେ ରବିଠାକୁର, ଓଡ଼ିଆ କାବ୍ୟ ଜଗତରେ ରାଧାନାଥଙ୍କର ଯେଉଁ ସ୍ଥାନ, ହିନ୍ଦୀ କାବ୍ୟ ଜଗତରେ ଜୟଶଙ୍କରଙ୍କର ସେହି ସ୍ଥାନ ରହିଛି ।

ହିନ୍ଦୀ ସାହିତ୍ୟ କ୍ଷେତ୍ରରେ ଏହିପରି ଏକ ବିପ୍ଳବ ଘଟାଇ ଯୁଗସ୍ରଷ୍ଟା ଜୟଶଙ୍କର ୧୯୩୭ ଖ୍ରୀଷ୍ଟାବ୍ଦରେ ୪୮ ବର୍ଷ ବୟସରେ ଇହଲୀଳା ସମ୍ବରଣ କରିଥିଲେ ।

'କାମାୟନୀ' ଜୟଶଙ୍କର ପ୍ରସାଦଙ୍କ ପ୍ରଣୀତ ଶ୍ରେଷ୍ଠ କାବ୍ୟ । ମହାପ୍ରଳୟରେ ସୃଷ୍ଟି ଧ୍ୱଂସ ପାଇଲା । ବିବସ୍ୱାନଙ୍କ ପୁତ୍ର ମନୁ ଓ କାମଙ୍କ କନ୍ୟା ଶ୍ରଦ୍ଧା କେବଳ ମହାପ୍ରଳୟ ପରେ ବଞ୍ଚି ରହିଲେ । ମନୁ ଓ ଶ୍ରଦ୍ଧାଙ୍କ ମିଳନରେ ମାନବସୃଷ୍ଟିର ପ୍ରବର୍ତ୍ତନ ହେଲା । ଏହାପରେ ଦେବକନ୍ୟା ଇଡ଼ା ମନୁଙ୍କ ନିକଟରେ ଉପସ୍ଥିତ ହେଲେ । ମନୁଙ୍କ ସଙ୍କଳ୍ପରୁ ଇଡ଼ାଙ୍କର ଜନ୍ମ ।

ମନୁ ଓ ଶ୍ରଦ୍ଧା କାମାୟନୀ କାବ୍ୟର ନାୟକ ଓ ନାୟିକା ଏବଂ ଇଡ଼ା ଉପନାୟିକା । ଶ୍ରଦ୍ଧା କାମଙ୍କ ଦୁହିତା ହୋଇଥିବାରୁ ପ୍ରସାଦଜୀ କାବ୍ୟର ନାମ 'କାମାୟନୀ' ରଖିଛନ୍ତି ।

ପ୍ରସାଦଜୀ ମନୁଷ୍ୟର ମନକୁ ଅର୍ଥାତ୍ ମନନ ବା ଚିନ୍ତାକୁ ମନୁରୂପେ ଗ୍ରହଣ କରିଛନ୍ତି, ହୃଦୟକୁ ଶ୍ରଦ୍ଧାରୂପେ ଏବଂ ମସ୍ତିଷ୍କକୁ ଇଡ଼ାରୂପେ ଗ୍ରହଣ କରିଛନ୍ତି । ମନର ସାହାଯ୍ୟକାରୀ ହୃଦୟ ବା ଭାବନା ଓ ମସ୍ତିଷ୍କ ବା ବୁଦ୍ଧି । ଅତଏବ ମନ, ହୃଦୟ ଓ ମସ୍ତିଷ୍କର ମିଳିତ ଚେଷ୍ଟାରେ ମାନବକୁ ନବଯୁଗ ବା ବିକାଶ ମିଳେ । ସୁତରାଂ ସେ ମନୁଙ୍କୁ ମନ୍ୱନ୍ତରର ବା ମାନବ

ସଭ୍ୟତାର ପ୍ରବର୍ତ୍ତକରୂପେ ଗ୍ରହଣ କରିଛନ୍ତି । ଇଡ଼ା ବା ବୁଦ୍ଧି ମନୁଙ୍କର ପଥପ୍ରଦର୍ଶିକା ବା ଚେତନାଦାୟିନୀ ବା ଶାସ୍ତ୍ରୀରୂପେ କଳ୍ପିତ ହୋଇଛନ୍ତି । ବୁଦ୍ଧିବାଦର ବିକାଶରେ ମନୁଷ୍ୟ ସୁଖ ଖୋଜେ, କିନ୍ତୁ ତଦ୍ୱାରା ତାହାର ଦୁଃଖ ସ୍ୱଭାବତଃ ବଢ଼ିଯାଏ ।

ମନୁ, ଶ୍ରଦ୍ଧା ଓ ଇଡ଼ାରୂପ ପୌରାଣିକ ବିଷୟବସ୍ତୁକୁ ଏପ୍ରକାର ରୂପକ ଛବି ଦେଇ ପ୍ରସାଦଙ୍କ ଅଦ୍ଭୁତ କଳ୍ପନାଶକ୍ତିର ବିକାଶରେ 'କାମାୟନୀ' କାବ୍ୟ ସୃଷ୍ଟି କରିଛନ୍ତି । ଚିନ୍ତା, ଭାଷା ଓ ଭାବ ସବୁ ଦିଗରେ ଏହା ଏକ ନୂଆ ପଥ ଦେଖାଇ ହିନ୍ଦୀ ସାହିତ୍ୟ ଜଗତର ଶ୍ରେଷ୍ଠ କାବ୍ୟରୂପେ ପରିଗଣିତ ହୋଇଅଛି ଏବଂ ଯୁଗସ୍ରଷ୍ଟା ଜୟଶଙ୍କର ପ୍ରସାଦଙ୍କୁ ଅମର କରିଅଛି ।

ଜୟଶଙ୍କରଙ୍କ ପ୍ରଣୀତ ବିଶିଷ୍ଟ କାବ୍ୟ, ନାଟକ ।—

୧ । କାବ୍ୟ—କାମାୟନୀ, ଆଁସୁ, ପ୍ରେମପଥିକ, ଲହର, ମହାରାଣାକା ମହତ୍ତ୍ୱ ।

୨ । ନାଟକ—ରାଜ୍ୟଶ୍ରୀ, ସ୍କନ୍ଦଗୁପ୍ତ, ଅଜାତଶତ୍ରୁ, ଚନ୍ଦ୍ରଗୁପ୍ତ, ଜନ୍ମେଜୟକା ନାଗଯଜ୍ଞ ।

—୪୦୪—

## ସାରଳା ଦାସ

ଭାରତରେ କୌଣସି କାଳରେ ବେଦର ଭାଷା ଲୋକକଥିତ ଭାଷା ଥିଲା । ସେତେବେଳେ ସେହି ଭାଷାରେ ବେଦମାନ ଲେଖା ଯାଇଥିଲା । ମନୁଷ୍ୟ କଥିତ ଭାଷା ବରାବର ବଦଳିଯାଉଛି । ପାଞ୍ଚଶହ ବର୍ଷ ପୂର୍ବେ ଓଡ଼ିଆ ଭାଷାର ଯେଉଁ ରୂପ ଥିଲା, ଏକ୍ଷଣି ତାହା ନାହିଁ । ଆମ ପୁରୀ ଦେଉଳରେ ମାଦଳାପାଞ୍ଜି ପ୍ରାଚୀନ ଓଡ଼ିଆ ଭାଷାରେ ଲେଖାଯାଇଛି । ଏକ୍ଷଣି ସେହି ପାଞ୍ଜିର ଓଡ଼ିଆ ଠିକେ ଠିକେ ବୁଝିବାକୁ ଆମକୁ ସହଜ ହେଉନାହିଁ । ସାରଳା ମହାଭାରତର ଅନେକ ଓଡ଼ିଆ ଶବ୍ଦ ମଧ୍ୟ ଆମକୁ ଏକ୍ଷଣି ଅଜଣା ରହୁଛି । ହଜାର ହଜାର ବର୍ଷ ପରେ ଲୋକେ ବେଦର ଲିଖିତ ଭାଷା ବୁଝି-

ପାରିଲେ ନାହିଁ । ବୈଦିକ ଯୁଗରେ ଧର୍ମ, ରୀତିନୀତି, ଆଚାର ବ୍ୟବହାର ମଧ୍ୟ ବଦଳିଗଲା । ତେଣୁ ବେଦ, ଉପନିଷଦ ପ୍ରଭୃତିରୁ ସାର, ଧର୍ମ-ଉପଦେଶ ସଂଗ୍ରହ କରି କଥିତ ସଂସ୍କୃତ ଭାଷାରେ ବ୍ୟାସ ମହାଭାରତ ସଙ୍କଳନ କରିଥିଲେ ।

କାଳକ୍ରମେ ଲୋକେ ସଂସ୍କୃତ ଭାଷାକୁ ମଧ୍ୟ କଥିତ ଭାଷାରୂପେ ବ୍ୟବହାର କଲେ ନାହିଁ । ସେମାନେ ପ୍ରାକୃତ ଭାଷା କହିଲେ । ଯେଉଁମାନେ ଗୁରୁ ନିକଟରୁ ବା ବିଦ୍ୟାଳୟରେ ସଂସ୍କୃତ ଭାଷା ପଢ଼ି ନ ଥିଲେ ଏବଂ ଘରେ ବାହାରେ ପ୍ରାକୃତ ଭାଷାରେ କଥାବାର୍ତ୍ତା କରୁଥିଲେ, ସେମାନେ ଆଉ ସଂସ୍କୃତ ଭାଷାର ଗ୍ରନ୍ଥମାନଙ୍କୁ ବୁଝିପାରିଲେ ନାହିଁ । ତେଣୁ ସେହି ଗ୍ରନ୍ଥମାନଙ୍କୁ ପ୍ରାକୃତ ବା କଥିତ ଭାଷାରେ ଲେଖିବା ଦରକାର ପଡ଼ିଥିଲା ।

ପ୍ରାକୃତ ଭାଷା ବୋଇଲେ ଆମେ ଏବର ହିନ୍ଦୀ, ବଙ୍ଗଳା, ଓଡ଼ିଆ, ମରହଟ୍ଟୀ ପ୍ରଭୃତି ଭାଷା ବୋଲି ବୁଝୁଁ । ଆମ ଓଡ଼ିଶାର ଶାରଳା ଦାସ, ବ୍ୟାସଙ୍କ ସଂସ୍କୃତ ମହାଭାରତର ଓଡ଼ିଆ ସଂସ୍କରଣ ଓଡ଼ିଶାରେ ଲେଖି ଜଣେ ବିଖ୍ୟାତ କବି ହୋଇଛନ୍ତି ।

କଟକ ଜିଲ୍ଲାରେ ଝଙ୍କଡ଼ ଗୋଟିଏ ପ୍ରସିଦ୍ଧ ସ୍ଥାନ । ସେଠାରେ ଶାରଳା ଠାକୁରାଣୀଙ୍କ ପୀଠ ଅଛି । ସାରଳାଙ୍କ ସେବକ ବା ପୂଜାରୀମାନଙ୍କୁ 'ମୂନି' ବୋଲି କହନ୍ତି । ଝଙ୍କଡ଼ ନିକଟବର୍ତ୍ତୀ କେନ୍ଦୁଳିପଟା ଗ୍ରାମରେ ସିଦ୍ଧେଶ୍ୱର ନାମରେ ଜଣେ ଲୋକ ଜନ୍ମଗ୍ରହଣ କରିଥିଲେ । ସେ ସାରଳାଙ୍କ ଭକ୍ତ ଓ ସମ୍ଭବତଃ ତାଙ୍କ ସେବାଯୁକ୍ତ ଥିଲେ । ଏହି ସମୟରେ ସୂର୍ଯ୍ୟବଂଶର କପିଳେନ୍ଦ୍ର ଦେବ ଓଡ଼ିଶାର ଗଜପତି ଥିଲେ । ତେଣୁ ଏହା ଖ୍ରୀଷ୍ଟ ପଞ୍ଚଦଶ ଶତାବ୍ଦୀର ବା ଆଜକୁ ପାଞ୍ଚଶହ ବର୍ଷ ତଳର କଥା ।

ଏହି ସିଦ୍ଧେଶ୍ୱର ଓଡ଼ିଆ ମହାଭାରତ ଲେଖିଛନ୍ତି ଏବଂ ନିଜକୁ ନିଜେ ଶୂଦ୍ରମୁନି ଶାରଳା ଦାସ ବୋଲି କହନ୍ତି । ସେ ଜାତିରେ ଶୂଦ୍ର, ଜୀବିକାରେ ମୁନି ବା ସେବାଯୁକ୍ତ ଥିବାରୁ ନିଜକୁ ଶୂଦ୍ରମୁନି କହିଛନ୍ତି ଏବଂ ଶାରଳା ଠାକୁରାଣୀଙ୍କର ଦାସ ବା ଭକ୍ତ ଥିବାରୁ ନିଜ ପ୍ରକୃତ ନାମ ଲୁଚାଇ ଶାରଳା ଦାସ ନାମରେ ମହାଭାରତରେ ଆପଣାର ପରିଚୟ ଦେଇଛନ୍ତି ।

ଭାରତର ଲୋକେ ତଥା ଓଡ଼ିଶାର ଲୋକେ କିଛି ନ ଗାଆନ୍ତି, ଭଲ କାମ କଲେ ନାମ ଲୁଚାଇ ରଖିବାକୁ ପ୍ରଶସ୍ତ ମଣନ୍ତି କରୁଥିଲେ ।

ଶାରଳା ଦାସ ଜଣେ ଅତି ସ୍ୱାଧୀନଚେତା ଥିଲେ । ସେ ସଂସ୍କୃତ ମହାଭାରତକୁ ଭଲରୂପେ ଆୟତ୍ତ କରିଥିଲେ ଏବଂ ତାହାର ଆବଶ୍ୟକ ଓ ଅନାବଶ୍ୟକ ବିଷୟବସ୍ତୁ ମଧ୍ୟରେ ପ୍ରଭେଦ ବୁଝି ପାରିଥିଲେ । ସେ ସଂସ୍କୃତ ମହାଭାରତକୁ ଅନୁବାଦ କରିନାହାନ୍ତି; କିନ୍ତୁ ମୂଳ ବିଷୟବସ୍ତୁ ଓ ଧାରା ସୂକ୍ଷ୍ମ କଥାତତ୍ତ୍ୱକୁ ଯଥାଯଥ ଭାବରେ ଓଡ଼ିଆରେ ନେଇ ଆସିଛନ୍ତି । ପୁଣି ତାହାରେ ଓଡ଼ିଶାର ଇତିହାସ, ରୀତିନୀତି, ଆଚାରବ୍ୟବହାର, ଭାଷା ପ୍ରଭୃତି ଏପରି ସିଦ୍ଧହସ୍ତ ରୂପେ ନେଇ ପୂରାଇଛନ୍ତି ଯେ, କେହି ହେଲେ ଓଡ଼ିଆ ମହାଭାରତରେ ଶାରଳା ଦାସଙ୍କ କଳ୍ପନା ପ୍ରସୂତ ବିଷୟବସ୍ତୁ ଅଛି ବୋଲି ଧରି ପାରନ୍ତି ନାହିଁ ।

ଶାରଳା ମହାଭାରତ ତତ୍କାଳୀନ କଥିତ ଓଡ଼ିଆ ଭାଷାରେ ଲିଖିତ ଏବଂ ଜନସାହିତ୍ୟ ହୋଇଥିବାରୁ ଦେଶବାସୀ ତାହାର ବିଶେଷ ଆଦର କରନ୍ତି । ଶାରଳା ଦାସ ସ୍ୱଭାବତଃ କବି ହୋଇଥିବାରୁ ଭାଷା ଓ ଭାବକୁ ଜୀବନ୍ତ ଓ ପ୍ରାଣମୟ କରିଛନ୍ତି । ତାଙ୍କର ବର୍ଣ୍ଣନା ଏପରି ହୃଦୟସ୍ପର୍ଶୀ ଯେ ଶୁଣିବାକୁ କେତେବେଳେ ହେଲେ ବିରକ୍ତି ଲାଗେନାହିଁ ।

ଶାରଳା ମହାଭାରତ ଏମୁଣ୍ଡ ସେମୁଣ୍ଡ ଦାଣ୍ଡୀ ବୃତ୍ତରେ ଲେଖା । ଏ ବୃତ୍ତରେ ଦୁଇଟି ପାଦ ଥାଇ ଗୋଟିଏ ପଦ ହୁଏ । ଗୋଟିଏ ପାଦରେ ତେର ଅକ୍ଷର, ଆଉ ପାଦରେ ଚଉଦ ଅକ୍ଷର ; କେଉଁଠି ପନ୍ଦର ଅକ୍ଷର, ଆଉ ପାଦରେ ଷୋହଳ ବା ସତର ଅକ୍ଷର । ଅକ୍ଷର ପ୍ରମାଣ ନାହିଁ, ସାଧାରଣତଃ ବାର ତେରରୁ ଷୋହଳ ସତର ଅକ୍ଷର ଥାଏ ଏବଂ ଅଧିକାଂଶ ପାଦରେ ଚଉଦ ଅକ୍ଷର ରହେ । ଦାଣ୍ଡୀବୃତ୍ତରେ ଅକ୍ଷର ପ୍ରମାଣ ରହୁ ନ ଥିବାରୁ; ବୋଲିବାଟା ସବୁବେଳେ ବଦଳାବଦଳି ହୁଏ ଏବଂ ଶୁଣିବାକୁ ପ୍ରୀତିକର ହୁଏ । ସବୁ ପାଦ ଚଉଦ ଅକ୍ଷର ଥିଲେ, କର୍ଣ୍ଣକଟୁ ହୁଅନ୍ତା ।

କୃଷ୍ଣସିଂହ ବୋଲି ଧରାକୋଟର ଜଣେ ରାଜା ଅଷ୍ଟାଦଶ ଶତାବ୍ଦୀରେ ବ୍ୟାସଙ୍କ ମହାଭାରତର ଅବିକଳ ଓଡ଼ିଆ ଅନୁବାଦ କରିଥିଲେ । ଏହି ଅନୁବାଦ ଗ୍ରନ୍ଥ ଅତି ସୁନ୍ଦର ହୋଇଛି ଏବଂ ପଣ୍ଡିତମାନେ ତାକୁ ବଡ଼

ଆଦର କରନ୍ତି । ହେଲେହେଁ ଓଡ଼ିଆ ଜନତା ଶାରଳା ମହାଭାରତ ଶୁଣନ୍ତି । କୃଷ୍ଣସିଂହ ମହାଭାରତ ଶାରଳା ମହାଭାରତ ଆଗରେ ମୁଣ୍ଡ ଟେକି ପାରିନାହିଁ । ସଂସ୍କୃତ ମହାଭାରତ ଧାରଣା କରିବାକୁ ହେଲେ, ଶାରଳା ଲେଖା ନ ପଢ଼ି କୃଷ୍ଣସିଂହ ଲେଖା ପଢ଼ିବା ଦରକାର । ଅଥଚ ଲୋକେ କୃଷ୍ଣସିଂହ ନ ପଢ଼ି ସାରଳା ପଢ଼ୁଛନ୍ତି । ଏଥିରୁ ଦେଶରେ ଜନତା ମଧ୍ୟରେ ଶାରଳାଙ୍କ ପ୍ରତିପତ୍ତି, ପ୍ରତିଷ୍ଠା ଓ ଲୋକପ୍ରିୟତା ସହଜରେ ବୁଝାପଡ଼ିବ ।

ଶାରଳା ଓ କୃଷ୍ଣସିଂହ ମହାଭାରତ ଲେଖିବାରେ ଏତେ କୃତିତ୍ୱ ଦେଖାଇଛନ୍ତି ଯେ, ଏପର୍ଯ୍ୟନ୍ତ ଅନ୍ୟ କେହି ଓଡ଼ିଆ ମହାଭାରତ ଲେଖିବାକୁ ସାହସ କରିନାହାନ୍ତି । ଶାରଳା ଦାସଙ୍କ ମହାଭାରତ ଓଡ଼ିଶାର ଅତି ପ୍ରାଚୀନ ବା ପ୍ରଥମ ଲେଖା । ସେ ଓଡ଼ିଶାର ସର୍ବପ୍ରଥମ କବି । ତାଙ୍କୁ ଓଡ଼ିଆ ସାହିତ୍ୟର ପିତା ବୋଲି କହିଲେ ଅନ୍ୟାୟ ହେବ ନାହିଁ । କବିରୂପେ ସେ ଓଡ଼ିଶାରେ ଅମର ହୋଇଛନ୍ତି । ତାଙ୍କ ଲେଖା କେଡ଼େ ସୁନ୍ଦର ଜାଣିବାକୁ, ଦାଣ୍ଡୀ ବୃତ୍ତରେ କେତେକ ଧାଡ଼ି ବୋଲିବାକୁ ଚେଷ୍ଟା କର ।

ଗୁରୁଙ୍କ ବଚନେ ଚଳଇ ସବ୍ୟସାଚୀ ।
ଦେଖିଲା ଗହନ ବନେ ଶବରପଲ୍ଲୀ ଗୋଟି ଅଛି ।
କିରାତ ଆଖଡ଼ାରୁ ପଟାକୁ ବନ୍ଧଇ ବାଣ ।
ଅର୍ଜ୍ଜୁନକୁ ଦେଖିଣ ସେ ବାହାର ତତକ୍ଷଣ ।
କଳ୍ପଣ ଧାମସାକାଟରେ ଧନୁ କାନ୍ଧାବାରେ ଶର ଗୁଣ ।
କଟି ମେଖଳାରୁ କୁଠାର ଫିରିକ ନାରଜର ହୋଣ ।
ନଦର ଦେଉ ବାରେକ୍ୟଣ କପ ଟୋ କପ ବୋଲି ।
ଅର୍ଜ୍ଜୁନ ଉପରକୁ ଆସୁ ଅଛି ଚଲି ।
କେ କାହିଁଅଇ କବାଟ ଭୂଟରେ କାହାର କତ ଅଛୁ ।
ମୁଁଇ ବନଚର ମୋହର ଆଶ୍ରମ କମ୍ପା ହେଛୁ ।
ଆଦ୍ୟ ଥାଉ ଭରସା କମ୍ପା କରୁ ମରଣକୁ ।
ମାରି ପକାଇବି ବଳ ଦେବଇଁ ଆଜ ତୁକୁ ।
ଅର୍ଜ୍ଜୁନ ବୋଇଲା ଶୁଣରେ କବାଟ ।
ଏଟୋମାହ ଭ୍ରାତାନ୍ତ କେ କଲ ଧବଦାତ ।
ଅର୍ଜ୍ଜୁନ ବଚନ ଶୁଣି ଜାଗ ଶବର କୋପେ ।
ଧନୁରେ ନାରଜ ପୂରଇଲା ପରିତାପେ ।

ଆନ୍ଦୋଳି ଶର ଗୁଣ୍ଡନ୍ଦ୍ରେଣ ଦେଖିଲ ଫାଲ୍‌ଗୁନ୍ମ ।
ଶବରଙ୍କୁ ମାଇଲ ଦବ୍ୟ ସହସ୍ର ଧେନ ।
ଶରେଣ ଶର ଚଢ଼ ଚାଳ ଚ୍ଛେଉଣ ଅନ୍ତନ୍ତ ।
ସ୍ଵଜ ସମସ୍ତ ସହସ୍ରେ ଚଢ଼ ହୋଇଯାନ୍ତ ।

ଶାରଳା ଦାସଙ୍କ ଅମଳରେ ବଙ୍ଗଳା, ଓଡ଼ିଶା ମଧ୍ୟରେ ଘନିଷ୍ଠ ସଂଯୋଗ ଥିଲା । ଦୁଇ ଦେଶର ଲୋକେ ଆପଣାକୁ ଗୋଟିଏ ଜାତି ବୋଲି ବିବେଚନା କରୁଥିଲେ ଏବଂ ଉଭୟ ଦେଶରେ ଗୋଟିଏ ପ୍ରକାର ସଂସ୍କୃତି ବ୍ୟାପିଥିଲା । କୌଣସି କାଳରେ ଗୋଦାବରୀଠାରୁ କପିଶା ପର୍ଯ୍ୟନ୍ତ ଭୂଖଣ୍ଡ ପ୍ରାଚୀ କଳିଙ୍ଗ, କପିଶାଠାରୁ ପଦ୍ମାପର୍ଯ୍ୟନ୍ତ ଭୂଭାଗ ଗଙ୍ଗାରାଢ଼ କଳିଙ୍ଗ ଏବଂ ପଦ୍ମାଠାରୁ ପୂର୍ବଭାରତୀୟ ଦ୍ୱୀପପୁଞ୍ଜ ପର୍ଯ୍ୟନ୍ତ ସମୁଦ୍ରୋପାନ୍ତ ଭୂଖଣ୍ଡ ମଗଧକଳିଙ୍ଗ ନାମ ନେଇଥିଲା । ବଙ୍ଗୋପସାଗର କଳିଙ୍ଗୋଦଧି ବୋଲାଉଥିଲା । ଅର୍ଥାତ୍ ବଙ୍ଗୋପସାଗରର ସଂଲଗ୍ନ ଜନପଦର ଦେଶର ନାମ କଳିଙ୍ଗ ଥିଲା । ତାମ୍ରଲିପ୍ତ ଥିଲ କଳିଙ୍ଗର ଏକ ଶ୍ରେଷ୍ଠ ବନ୍ଦର । ଏହା ଥିଲ କଳିଙ୍ଗ ସଭ୍ୟତାର ପ୍ରଧାନ ଓ କେନ୍ଦ୍ରସ୍ଥଳ । ଓଡ଼ିଶାର ଗଜପତି ତେଲେଙ୍ଗା ମୁକୁନ୍ଦଦେବଙ୍କ ପର୍ଯ୍ୟନ୍ତ ଏହି ସଂଯୋଗ ଅକ୍ଷୁର୍ଣ୍ଣ ରହିଥିଲ । ମୁକୁନ୍ଦ-ଦେବ ତ୍ରିବେଣୀଘାଟ ସ୍ଥାପନ କରିଥିଲେ । ଓଡ଼ିଶାର ଜୟଦେବ ଓ ଶ୍ରୀଚୈତନ୍ୟ ଦୁଇ ଦେଶକୁ ଗୋଟିଏ କରିଛନ୍ତି । ଆଜିପର୍ଯ୍ୟନ୍ତ ତଥାକଥିତ 'ଓଡ଼ିଆ' ଓ 'ବଙ୍ଗାଳୀ'ଙ୍କ ମଧ୍ୟରେ ସଂସ୍କୃତି ଓ ରୀତିନୀତିରେ ସଂପୂର୍ଣ୍ଣ ଐକ୍ୟ ରହିଛି ଏବଂ ଦୁଇ ଜାତି ପରସ୍ପରକୁ ଗୋଟିଏ ଜାତି ବୋଲି ମନେ କରୁଛନ୍ତି ।

ଶାରଳା ଦାସଙ୍କ ବେଳକୁ ଓଡ଼ିଶାରେ ଓ ବଙ୍ଗଳାରେ ଦୁଇଟି ବିଭିନ୍ନ ଭାଷା ଓ ଲିପିର ସୃଷ୍ଟି ହୋଇଥିଲା । ସାରଳାଙ୍କ ଓଡ଼ିଆ ମହାଭାରତ ବଙ୍ଗଳାଭାଷୀଙ୍କ ମଧ୍ୟରେ ମଧ୍ୟ ପ୍ରତିପତ୍ତି ଓ ଆଦରଲାଭ କରିଥିଲା । ଷୋଡ଼ଶ ଶତାବ୍ଦୀରେ ଏହା ବଙ୍ଗଳା ଭାଷାରେ ଅନୁବାଦିତ ହୋଇଥିଲା । କେହି କେହି ବଙ୍ଗଳା ଲିପିରେ ଓଡ଼ିଆ ମହାଭାରତର ପ୍ରତିଲିପି ମଧ୍ୟ ନେଇଥିଲେ । ରାୟବାହାଦୁର ଦୀନେଶଚନ୍ଦ୍ର ସେନ ସାରଳା ମହାଭାରତର ବିରାଟ ପର୍ବର ବଙ୍ଗଳା ପ୍ରତିଲିପି ଆବିଷ୍କାର କରିଛନ୍ତି ।

—:o:—

# ବଳରାମ ଦାସ

ଶାରଳା ଦାସ ଓ ବଳରାମ ଦାସ ପ୍ରାୟ ଏକା ସମୟର ଲୋକ । ଶାରଳା କପିଳେନ୍ଦ୍ରଙ୍କ ରାଜତ୍ୱରେ ମହାଭାରତ ଲେଖିଥିଲେ । ବଳରାମ ପୁରୁଷୋତ୍ତମ ବା ପ୍ରତାପରୁଦ୍ରଙ୍କ ରାଜତ୍ୱରେ ରାମାୟଣ ଲେଖିଥିଲେ । ଶାରଳା ଯେପରି ସଂସ୍କୃତ ମହାଭାରତରୁ ଅନୁବାଦ କରିନାହାନ୍ତି ଓ ସ୍ୱାଧୀନ ଭାବରେ ମହାଭାରତ ପ୍ରଣୟନ କରିଛନ୍ତି, ଅଥଚ ସମସ୍ତ ବିଷୟବସ୍ତୁ ସଂସ୍କୃତରୁ ଆଣି ଓଡ଼ିଆରେ ଥୋଇଛନ୍ତି, ବଳରାମ ଦାସ ମଧ୍ୟ ସେହିପରି ସଂସ୍କୃତ ରାମାୟଣ ବା ବାଲ୍ମୀକି ରାମାୟଣରୁ ଅନୁବାଦ ନ କରି ତହିଁର ସମଗ୍ର ବିଷୟବସ୍ତୁ ଆଣି ସ୍ୱାଧୀନ ଶୈଳୀରେ ଓଡ଼ିଆ ରାମାୟଣରେ ଥୋଇଛନ୍ତି । ସାରଳା ମହାଭାରତରେ ଯେପରି ଓଡ଼ିଶାର ଇତିହାସ ଅଛି, ବଳରାମ ରାମାୟଣରେ ତାହା ନାହିଁ । ବଳରାମ ସଂସ୍କୃତ ରାମାୟଣରେ ନ ଥିବା କଥା ନିଜ ରଚନାରେ ଦେଇନାହାନ୍ତି ।

ବଳରାମଙ୍କ ରାମାୟଣ ଅତି ସରଳ ଜନଭାଷାରେ ଲିଖିତ ଏବଂ ସାଧାରଣରେ ବିଶେଷ ଆଦର ପାଇଅଛି । ଏହା ଏତେ ଲୋକପ୍ରିୟ ହୋଇଛି ଯେ, ଏପର୍ଯ୍ୟନ୍ତ ଅନ୍ୟ ଓଡ଼ିଆ ରାମାୟଣ ତାହାର ସମକକ୍ଷ ହୋଇ ପାରିନାହିଁ ।

ସାରଳା ମହାଭାରତ ଯେପରି ଦାଣ୍ଡୀବୃତ୍ତରେ ଲେଖା ହୋଇଛି, ବଳରାମ ରାମାୟଣ ମଧ୍ୟ ସେହିପରି ଦାଣ୍ଡୀ ବୃତ୍ତରେ ଲେଖା ହୋଇଛି । ତହିଁର ଗୋଟିଏ ପଦ ଏହା ।

ମୁହିଁ ହୀନ ଯେ ବିଶେଷ ଶୂଦ୍ରଯୋନି ।
ସୁଜ୍ଞଜନେ କୋପ ନକରିବ ଏହା ଶୁଣି ॥

ବଳରାମ ଦାସଙ୍କ ପିତାଙ୍କ ନାମ ସୋମନାଥ ମହାପାତ୍ର ଏବଂ ମାତାଙ୍କ ନାମ ମନୋମାୟା । ବଳରାମ ଗୃହତ୍ୟାଗ କରି ବୈଷ୍ଣବ ବା ସନ୍ନ୍ୟାସୀ ହୋଇଥିଲେ ଏବଂ ୩୨ ବର୍ଷ ବୟସରେ ରାମାୟଣ ରଚନା ଶେଷ କରିଥିଲେ । ବୈଷ୍ଣବ ହେଲାରୁ ସେ 'ମହାପାତ୍ର' ବିରୁଦ ଛାଡ଼ି ବଳରାମ ଦାସ ବୋଲାଇଲେ ।

ଶାରଳା ଓ ବଳରାମ ଓଡ଼ିଆର ଜାତୀୟ କବି । ଏ ଦୁହିଙ୍କ ଓ ଜଗନ୍ନାଥ ଦାସଙ୍କ ଯୋଗେ ଓଡ଼ିଶା ଗୌରବାନ୍ୱିତ ହୋଇଅଛି ଏବଂ ଓଡ଼ିଶାର ଜାତୀୟ ଜୀବନ ଗଠିତ ହୋଇଛି । ଶାରଳା, ବଳରାମ ଓ ଜଗନ୍ନାଥ ଓଡ଼ିଆର ଜନକ ରଷିତ୍ରୟ ।

—୪୦୪—

## ଜଗନ୍ନାଥ ଦାସ

ଓଡ଼ିଶାର ସୂର୍ଯ୍ୟବଂଶୀୟ ରାଜା ପ୍ରତାପରୁଦ୍ରଙ୍କ ସମୟରେ ପାଞ୍ଚ ଜଣ ବୈଷ୍ଣବ ପଣ୍ଡିତ ଓଡ଼ିଶାରେ ବିଶେଷ ପ୍ରସିଦ୍ଧ ଥିଲେ । ସେମାନଙ୍କ ନାମ ଜଗନ୍ନାଥ ଦାସ, ବଳରାମ ଦାସ, ଅନନ୍ତ ଦାସ, ଯଶୋବନ୍ତ ଦାସ ଓ ଅଚ୍ୟୁତାନନ୍ଦ ଦାସ । ଏହି ପାଞ୍ଚ ଜଣଙ୍କୁ ପଞ୍ଚସଖା କହନ୍ତି । ପଞ୍ଚସଖାଙ୍କ ମଧ୍ୟରେ ଜଗନ୍ନାଥ ଦାସ ଶ୍ରେଷ୍ଠ ଥିଲେ । ଏମାନେ ପାଞ୍ଚ ଜଣଯାକ ଶ୍ରୀ ଚୈତନ୍ୟଙ୍କ ଶିଷ୍ୟ ହୋଇଥିଲେ । ଶ୍ରୀ ଚୈତନ୍ୟଙ୍କ ବୈଷ୍ଣବଧର୍ମ ପ୍ରଚାରରେ ଏମାନେ ବିଶେଷ ସାହାଯ୍ୟ କରିଥିଲେ ।

ଓଡ଼ିଶାର ରାଜା ପ୍ରତାପରୁଦ୍ର ଶ୍ରୀ ଚୈତନ୍ୟ ଓ ପଞ୍ଚସଖାଙ୍କ ପରମ ଭକ୍ତ ଥିଲେ । ସେ ଧର୍ମପ୍ରଚାରରେ ଶ୍ରୀଚୈତନ୍ୟଙ୍କୁ ଯେପରି ସାହାଯ୍ୟ କରିଥିଲେ, ଧର୍ମଗ୍ରନ୍ଥ ପ୍ରଣୟନ ଓ ପ୍ରଚାରରେ ପଞ୍ଚସଖାଙ୍କୁ ସେହିପରି ପୃଷ୍ଠପୋଷକତା କରୁଥିଲେ । ପଞ୍ଚସଖା ଜ୍ଞାନମିଶ୍ରା ଭକ୍ତି ଓ ବୈଷ୍ଣବଧର୍ମର ନିଗୂଢ଼ ତତ୍ତ୍ୱମାନଙ୍କ ପ୍ରଚାର ନିମନ୍ତେ ଗ୍ରନ୍ଥମାନ ପ୍ରଣୟନ କରିଥିଲେ ।

ବୈଦିକ ଯୁଗରେ ଗ୍ରନ୍ଥମାନଙ୍କ ପରେ ସଂସ୍କୃତ ଭାଷାର ଗ୍ରନ୍ଥ ମଧ୍ୟରେ ରାମାୟଣ, ମହାଭାରତ ଓ ଭାଗବତ ଭାରତର ଶ୍ରେଷ୍ଠ ଧର୍ମଗ୍ରନ୍ଥ । ଶାରଳା ଦାସ ମହାଭାରତକୁ ପ୍ରଥମେ ଓଡ଼ିଆରେ ଲେଖିଥିଲେ । ଶାରଳାଙ୍କ ଅଳ୍ପଦିନ ପରେ ବଳରାମ ଦାସ ରାମାୟଣକୁ ଓ ଜଗନ୍ନାଥ ଦାସ ଭାଗବତକୁ ଓଡ଼ିଆରେ ଲେଖିଥିଲେ । ମହାଭାରତ ଓ ରାମାୟଣ ଯେପରି ସହଜ, ଭାଗବତ ସେପରି ସହଜ ଗ୍ରନ୍ଥ ନୁହେଁ । ଏହା ଦାର୍ଶନିକ ଗ୍ରନ୍ଥ ଏବଂ ବୁଝିବାକୁ ସହଜ ନୁହେଁ । ଅଗାଧ ପାଣ୍ଡିତ୍ୟ, ଅସାଧାରଣ ବୁଦ୍ଧି ଓ ଈଶ୍ୱର

ଜ୍ଞାନଶକ୍ତି ହେଲେ ଯାଇ ଭାଗବତରେ ଲୋକେ ପ୍ରବେଶ କରି ପାରନ୍ତି । ସେପରି ଗ୍ରନ୍ଥକୁ ଓଡ଼ିଆ ଭାଷାରେ ଲେଖିବା ଏକ ଅତି କଠିନ ବ୍ୟାପାର ।



ଜଗନ୍ନାଥ ଦାସ ସଂସ୍କୃତ ଭାଷାରେ ବ୍ୟୁତ୍ପନ୍ନ ଥିଲେ । ସେ ଜଣେ ବଡ଼ ପଣ୍ଡିତ ଓ ମେଧାବୀ ଲୋକ ଥିଲେ । ଶ୍ରୀଚୈତନ୍ୟଙ୍କ ସଙ୍ଗେ ଯେତେବେଳେ ଜଗନ୍ନାଥ ଦାସଙ୍କର ଦେଖାହୁଏ, ଶ୍ରୀଚୈତନ୍ୟ ଜଗନ୍ନାଥ ଦାସଙ୍କୁ ଦେଖି ଓ ତାଙ୍କର ଜ୍ଞାନ, ପାଣ୍ଡିତ୍ୟର ପରିଚୟ ପାଇ ବିସ୍ମିତ ହୋଇଥିଲେ । ସେ ତାଙ୍କୁ "ଅତିବଡ଼ୀ ଜଗନ୍ନାଥ ଦାସ" ବୋଲି କହିଥିଲେ । ଏପ୍ରକାର ଜଗନ୍ନାଥ ଦାସ ହିଁ ବ୍ୟାସଙ୍କ ରଚିତ କଠିନ ଭାଗବତ ଶାସ୍ତ୍ରର ଓଡ଼ିଆ ସଂସ୍କରଣ କରିବାକୁ ସମର୍ଥ ଏକା । ବଙ୍ଗଳା ଦେଶରେ ଜଗନ୍ନାଥଙ୍କ ପର୍ଯ୍ୟନ୍ତ କେହି ଭାଗବତର ବଙ୍ଗଳା ସଂସ୍କରଣ କରିବାକୁ ସମର୍ଥ ହୋଇ ନ ଥିଲେ । ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ଲେଖା ହେବାରୁ ବଙ୍ଗଦେଶର ଲୋକେ ଏହି ଓଡ଼ିଆ ଭାଗବତର ଅସଂଖ୍ୟ ପ୍ରତିଲିପି କରି ନେଇଥିଲେ ।

ଜଗନ୍ନାଥ ଦାସ ସଂସ୍କୃତ ଭାଗବତର ଆକ୍ଷରିକ ଅନୁବାଦ କରିନାହାନ୍ତି; କିନ୍ତୁ ଲୋକଙ୍କ ସହଜ ହୃଦବୋଧ ସକାଶେ ସଂସ୍କୃତର ବିଷୟବସ୍ତୁକୁ ସଜାଇ ସରଳ ଓ ସ୍ୱଚ୍ଛନ୍ଦ ଅନୁବାଦ କରିଛନ୍ତି । ଏହି କାର୍ଯ୍ୟରେ ତାଙ୍କର ମୌଳିକତା ଓ ବୁଦ୍ଧିମତ୍ତା ରହିଅଛି । ଓଡ଼ିଆ ଭାଗବତରେ ବୃତ୍ତ ଅତି ସହଜ, ସରଳ ଓ ରମଣୀୟ । ଏଥିରେ ଦୁଇଟି ଚରଣ ଓ ପ୍ରତି ଚରଣ ନବାକ୍ଷରୀ । ଏଣୁ ତାହା ବୋଲିବାକୁ ଭାରି ସୁଖ ଓ ପ୍ରୀତିକର । କେବଳ ଏତିକି ନୁହେଁ, ଭାଗବତର ଭାଷା ଚଳଣିତା, ବୁଝିବାକୁ ଆଦୌ ପ୍ରୟାସ କରିବାକୁ ପଡ଼େ ନାହିଁ । କଠିନ ଦାର୍ଶନିକ ଧର୍ମତତ୍ତ୍ୱକୁ ଜଗନ୍ନାଥ ଦାସ କିପରି ଏତେ ସହଜ ଚଳିଭାଷାରେ ସୁଖବୋଧ୍ୟ ରୂପରେ ପ୍ରକାଶ କଲେ ତାହା ଭାବିଲେ ବିସ୍ମୟ ଜାତ ହୁଏ । ଜଗନ୍ନାଥ ଦାସଙ୍କ ଧୀ, ପାଣ୍ଡିତ୍ୟ ଓ କବିତ୍ୱଶକ୍ତିର ଅନ୍ତ ପାଇହୁଏ ନାହିଁ ।

ଭାଗବତର ପ୍ରକୃତ ରୂପ ଓ ପ୍ରଶଂସା କରିବା ସାମର୍ଥ୍ୟ ଓ ଭାଷା ମିଳିବା କଷ୍ଟକର । ଏଣୁ ସେଥିରୁ କେତୋଟି ପଦ ଏଠାରେ ଉଦ୍ଧାର କଲେ ସମସ୍ତେ ଓଡ଼ିଆ ଭାଗବତର ମହତ୍ତ୍ୱ ଉପଲବ୍ଧି କରିପାରିବେ :—

ଦୁର୍ବୋଧ ଈଶ୍ୱରର ମାୟା । ମୂଢ଼ କେମନ୍ତେ ଜାଣେ ତାହା ॥
ସେ ମାୟା ନିସ୍ତାର କେମନ୍ତେ । ଉପାୟ ଥିଲେ କହ ମୋତେ ॥
ପ୍ରବୁଦ୍ଧ ବୋଲେ ଶୁଣ ରାୟ । କହିବା ଯେ ଅବା ଉପାୟ ॥
ଦୁଃଖ ନିବାରେ ସୁଖ ପାଇ । ଭୁଞ୍ଜେ ଅଟଣ୍ଡ ତନୁ ବହି ॥
ଏମନ୍ତେ ଥାଇ ଗୃହବାସେ । କର୍ମ କରଇ ଫଳ ଆଶେ ॥
କାମିନୀ ସଙ୍ଗେ କରେ ଭବ । କେବଳ ଦୁଃଖ ମାତ୍ର ଲଭ ॥
ମରଣ ପଥ ହେତୁ ଧନ । ତାର ଅର୍ଜନ ନିତ୍ୟ ମନ ॥
ଅନେକ ଦୁଃଖେ ତା ସଞ୍ଚଇ । ନିଶି ଦିବସେ ମନ ଦେଇ ॥
ନିରତେ ହୃଦୟ ନିର୍ଦ୍ଦୟ । ଏଣୁଟି ଧନ ଦୁଃଖମୟ ॥
ଦୁଃଖେ ସଞ୍ଚିତ ଯେତେ ଧନ । ସେ ନୁହେ ସୁଖେ ପ୍ରୟୋଜନ ॥
ସୁତ ତନୟ ଦାସୀ ଦାସ । ଏ ସବୁ ବିଜୁଳି ପ୍ରକାଶ ॥
ଏହାଙ୍କ ସ୍ନେହେ ବନ୍ଦୀ ହୋଇ । ପୋଷଇ ଦୁଃଖୀ ଭାର ବହି ॥
ସେ ପୁଣି ଯାନ୍ତି ନିଜ ପଥ । ଶୋକ ସନ୍ତାପ ଦେଇ ଚିତ୍ତ ॥
ଏହାଙ୍କ ସଙ୍ଗେ ଲଭ ଏହି । ଏ ଭାବ ମୂଢ଼ ନ ଜାଣଇ ॥

ଉଭୟ କୁଳ କରେ ନାଶ । ଏହା କାରଣେ ଗୃହବାସ ॥
ଗୃହୀ ସ୍ୱଭାବେ ପୁଣ୍ୟ କରି । ସ୍ୱର୍ଗେ ବସନ୍ତି ଦେହ ଧରି ॥
ଭୁଞ୍ଜନ୍ତି ନିଜ କର୍ମଫଳ । ସେ ପୁଣି ହୁଅନ୍ତି ନିଷ୍ଫଳ ॥
ନିମନ୍ତେ ଭୋଗ କ୍ଷୀଣ ହୋଇ । କର୍ମ ସରିଲେ ଭୋଗ କାହିଁ ॥
ପୁଣି ପଡ଼ନ୍ତି ସଂସାର ଭ୍ରମେ । ଗତ ଆଗତ ପରିଶ୍ରମେ ॥
ଏକଥା ବୁଝି ଗୁରୁପାଦେ । ଆଶ୍ରା କରିବ ଅପ୍ରମାଦେ ॥

ଜଗନ୍ନାଥ ଦାସ ପୁରୀ ନିକଟବର୍ତ୍ତୀ କପିଳେଶ୍ୱରପୁର ଶାସନରେ ବ୍ରାହ୍ମଣ ବଂଶରେ ଜନ୍ମିଥିଲେ । ତାଙ୍କ ପିତାଙ୍କ ନାମ ଭଗବାନ ଦାସ ପୁରାଣ-ପଣ୍ଡା ଓ ମାତାଙ୍କ ନାମ ପଦ୍ମାବତୀ । ସେ ବ୍ରାହ୍ମଣ ସନ୍ତାନ ରୂପେ ସଂସ୍କୃତ ସାହିତ୍ୟରେ ଅସାମାନ୍ୟ ବ୍ୟୁତ୍ପତ୍ତି ଲାଭ କରିଥିଲେ । ସେ ସଂସାରକୁ ଭଲ ପାଉ ନ ଥିଲେ ଏବଂ ଶ୍ରୀକ୍ଷେତ୍ରରେ ବାସ କରି ନିତ୍ୟ ଜଗନ୍ନାଥଙ୍କ ପ୍ରସାଦ ସେବା କରିବାକୁ ଜୀବନର ପରମ ଶ୍ରେୟଃ ବୋଲି ବିଚାର କରୁଥିଲେ ।

ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ଓଡ଼ିଶାରେ ଆଶ୍ଚର୍ଯ୍ୟ ରକମ ପ୍ରସିଦ୍ଧି ଓ ଜନପ୍ରିୟତା ଲାଭ କରିଛି । ଆଚଣ୍ଡାଳବ୍ରାହ୍ମଣ ସମସ୍ତେ ଏହାକୁ ପରମ ଆଦରରେ ପାଠ କରନ୍ତି ଏବଂ ଭାଗବତ ଯୋଗୁଁ ଧର୍ମର ଗୂଢ଼ ତଥ୍ୟମାନ ବୁଝିପାରୁଛନ୍ତି । ପ୍ରତି ଘରେ ଭାଗବତ ରହିଛି ଏବଂ ନିତ୍ୟ ଦୁଇ ସନ୍ଧ୍ୟାରେ ଭଗବାନଙ୍କ ଖଟୁଲିରେ ରହି ପୂଜା ପାଉଛି । ଅନେକେ ପ୍ରତିଦିନ ଭାଗବତରୁ କିଛି ପାଠ ନ କଲେ, ଅନ୍ନଗ୍ରହଣ କରନ୍ତି ନାହିଁ । ଗାଁରେ ଗାଁରେ ଭାଗବତ ଗାଦି ଘର ହୋଇଛି । ସେଠାରେ ଗାଁର ଲୋକ ନିତ୍ୟ ସନ୍ଧ୍ୟାରେ ମିଳି ଭାଗବତ ବୋଲନ୍ତି ଓ ଆଲୋଚନା କରନ୍ତି । ଖୋଳ, ମୃଦଙ୍ଗ ଧରି ଯେତେବେଳେ ଗାଁର ଲୋକେ ଏକାଠି ଭାଗବତ ଭଜନ ଓ ପାଲା କରନ୍ତି, ଶୁଣିବାକୁ ଓ ଦେଖିବାକୁ ଭାରି ସୁଖ ଲାଗେ ।

ଭାଗବତ ଆଜି ଓଡ଼ିଶାର ସାହିତ୍ୟରେ ସ୍ଥାନ ଅଧିକାର କରି ବସିଅଛି ଏବଂ ଜଗନ୍ନାଥ ଦାସ ଓଡ଼ିଶାର ସର୍ବଶ୍ରେଷ୍ଠ କବି ହୋଇ ରହିଛନ୍ତି । କେହି କବି ଓଡ଼ିଶାରେ ଜଗନ୍ନାଥ ଦାସଙ୍କ ସମକକ୍ଷ ବା ତାଙ୍କ ପରି ଆଦରପାତ୍ର ନୁହନ୍ତି ।

# ଉପେନ୍ଦ୍ର ଭଞ୍ଜ

ସପ୍ତଦଶ ଶତାବ୍ଦୀରେ ଧନଞ୍ଜୟ ଭଞ୍ଜ ଘୁମୁସରର ରାଜା ଥିଲେ । ସେ ଜଣେ କବି ଥିଲେ ଏବଂ ଚୌପଦୀଭୂଷଣ, ରଘୁନାଥବିଳାସ, ତ୍ରିପୁର-ସୁନ୍ଦରୀ, ମଦନମଞ୍ଜରୀ, ଅନଙ୍ଗରେଖା, ଇଚ୍ଛାବତୀ ପ୍ରଭୃତି କାବ୍ୟମାନ ରଚନା କରିଥିଲେ ।

ଧନଞ୍ଜୟ ଭଞ୍ଜଙ୍କର ଏକାଧିକ ରାଣୀଙ୍କ ମଧ୍ୟରୁ ଦାଣ୍ଡୀ ତାଙ୍କର ଅଧିକ ପ୍ରିୟା ଥିଲେ । ଦାଣ୍ଡୀଙ୍କ ପୁତ୍ରର ନାମ ନୀଳକଣ୍ଠ ଏବଂ ନୀଳକଣ୍ଠ ପୁତ୍ରମାନଙ୍କ ମଧ୍ୟରେ ଜ୍ୟେଷ୍ଠ ଥିଲେ । ନୀଳକଣ୍ଠ ସିଂହାସନ ଲାଭ ସକାଶେ ବ୍ୟାକୁଳ ହୋଇ କୌଶଳକରି ପିତାଙ୍କୁ ମରାଇ ରାଜା ହେଲେ; ମାତ୍ର ସେହି କୌଶଳ ଫଳରେ ରାଜ୍ୟରେ ବିଦ୍ରୋହ ହେଲା । ୧୭୦୪ ଖ୍ରୀଷ୍ଟାବ୍ଦରେ ଧନଞ୍ଜୟ ଓ ତାଙ୍କ ପୁତ୍ର ଉପେନ୍ଦ୍ର ଭଞ୍ଜ ରାଜ୍ୟରୁ ବିତାଡ଼ିତ ହୋଇ ନୟାଗଡ଼କୁ ପଳାୟନ କଲେ । ଧନଞ୍ଜୟଙ୍କ ଅନ୍ୟତମ ପୁତ୍ର ଘନଭଞ୍ଜ ଘୁମୁସରର ରାଜା ହେଲେ ।

ଧନଞ୍ଜୟ ଭଞ୍ଜ ନାତି ଉପେନ୍ଦ୍ର ଭଞ୍ଜଙ୍କୁ ସମଧିକ ଆଦର କରୁଥିଲେ ଏବଂ ତାଙ୍କ ଶିକ୍ଷାର ସୁବ୍ୟବସ୍ଥା କରିଥିଲେ । ସେ ନିଜେ କାବ୍ୟ କବିତା ସମ୍ବନ୍ଧରେ ନାତିଙ୍କ ସଙ୍ଗେ ଆଲୋଚନା କରୁଥିଲେ ଏବଂ କବିତା ରଚନା ଦିଗରେ ନାତିଙ୍କୁ ସବୁପ୍ରକାର ପ୍ରେରଣା ଦେଇଥିଲେ । ରଘୁନାଥବିଳାସ କାବ୍ୟ ଦେଖି ଉପେନ୍ଦ୍ର 'ବ'-ଆଦ୍ୟ ଅକ୍ଷରରେ ବୈଦେହୀଶବିଳାସ କାବ୍ୟ ପ୍ରଣୟନ ନିମନ୍ତେ ପିତାମହଙ୍କ ନିକଟରେ ପ୍ରତିଶ୍ରୁତ ହୋଇଥିଲେ ।



ଘୁମୁସରରୁ ବିତାଡ଼ିତ ହେବା ପରେ ଉପେନ୍ଦ୍ର ସିଂହାସନ ଲାଭ ଲାଳସା ପରିତ୍ୟାଗ କରିଥିଲେ ଏବଂ ସାହିତ୍ୟ-ସରସ୍ୱତୀଙ୍କ ଉପାସନାକୁ ପ୍ରିୟତର ବିବେଚନା କରିଥିଲେ । ସେ ବାଣପୁର ରାଜବଂଶରେ ବିବାହ କରିଥିଲେ ; କିନ୍ତୁ ବିବାହର ଅଳ୍ପ କେତେକ ବର୍ଷ ପରେ

ତାଙ୍କର ପତ୍ନୀ ବିୟୋଗ ଘଟିଥିଲା । ସେ ଦାରାନ୍ତର ଗ୍ରହଣ ନ କରି ସାହିତ୍ୟ ଚର୍ଚ୍ଚାରେ କାଳଯାପନ କରିଥିଲେ ଏବଂ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ସାହିତ୍ୟ ଚର୍ଚ୍ଚାକୁ ହିଁ ପରମ ପୁରୁଷାର୍ଥ ବୋଲି ଜ୍ଞାନ କରିଥିଲେ ।

ଶାରଳାଦାସ ଆଦି ଓଡ଼ିଆ ଭାଷାରେ ପ୍ରାଚୀନଯୁଗରେ କବି । ଉପେନ୍ଦ୍ର ମଧ୍ୟଯୁଗରେ କବି । ପ୍ରାଚୀନ କାବ୍ୟରେ ରଚନାଶୃଙ୍ଖଳା ଓ ଅଳଙ୍କାରର ସମାବେଶ ଦେଖାଯାଏ ନାହିଁ । ଏହି ଦୁଇ ଦିଗରେ ଉପେନ୍ଦ୍ର ମଧ୍ୟଯୁଗର କବିମାନଙ୍କୁ ଏକ ନୂତନ ମାର୍ଗ ଦେଖାଇ ଏବଂ ରଚନାର ପ୍ରକର୍ଷ ଓ ସୌଷ୍ଠବରେ ଓଡ଼ିଆ ସାହିତ୍ୟରେ ଅଦ୍ୱିତୀୟ ହୋଇଥିବା କବିସମ୍ରାଟ୍ ନାମରେ ଅଭିହିତ ହୋଇଅଛନ୍ତି । ଆଳଙ୍କାରିକ କାବ୍ୟ ପ୍ରଣୟନରେ ସେ ସବୁ ଯୁଗର କବିମାନଙ୍କ-ମଧ୍ୟରେ ଶୀର୍ଷସ୍ଥାନ ଅଧିକାର କରିଅଛନ୍ତି ।

ଉପେନ୍ଦ୍ର ଉଣା ଅଧିକରେ ପ୍ରାୟ ପଚିଶ ଖଣ୍ଡ କାବ୍ୟ ପ୍ରଣୟନ କରିଥିଲେ । ତାଙ୍କର କାବ୍ୟମାନଙ୍କରେ କବିତ୍ୱ ଓ କଳ୍ପନାର ଅଦ୍ଭୁତ ପରିପାଟୀ ଦେଖାଯାଏ । ଔପନ୍ୟାସିକ କାବ୍ୟରଚନାରେ ଉପେନ୍ଦ୍ର ଓଡ଼ିଆ ସାହିତ୍ୟରେ ପ୍ରଥମ ଓ ପଥ ପ୍ରଦର୍ଶକ ଥିଲେ ।

ବୈଦେହୀଶବିଳାସ କାବ୍ୟ ରାମାୟଣର କଥା ଆଶ୍ରୟରେ ଲିଖିତ ଏବଂ ସମଗ୍ର କାବ୍ୟର ପ୍ରତି ପାଦର ଆଦ୍ୟ ଅକ୍ଷର 'ବ' । ଅନେକାର୍ଥ ସ୍ୱରେଣ କାବ୍ୟଟିରେ କୌଣସି ଅକ୍ଷର ବନ୍ଧନରେ ଅ-ଛଡ଼ା ଅନ୍ୟ ସ୍ୱର ଯୋଗ ହୋଇନାହିଁ । ଚିତ୍ରକାବ୍ୟ ବନ୍ଧୋଦୟରେ ନାନା ପ୍ରକାର ବନ୍ଧରେ କବିତା ରଚନାର ପରିପାଟୀ ପ୍ରଦର୍ଶିତ ହୋଇଛି ।

ରଚନା ପ୍ରଣାଳୀ, ନାନାବିଧ ଛନ୍ଦାବଳି ଓ ଅଳଙ୍କାରର ସୌଷ୍ଠବ ହେତୁ ଉପେନ୍ଦ୍ରଙ୍କ କାବ୍ୟମାନ ବିଦ୍ୱାନ୍‌ମଣ୍ଡଳୀରେ ଅତି ଆଦୃତ ହୋଇଆସୁଛି ଏବଂ ପଲ୍ଲୀରେ ତାହାଙ୍କ ସାହିତ୍ୟର ପ୍ରଚାର ହୋଇଅଛି ।

କବିଙ୍କର ରଚନାପଟୁତା ପ୍ରଦର୍ଶନ ଏବଂ ପାଠକମାନଙ୍କ କୌତୂହଳ ନିବାରଣ ଓ ହୃଦ୍‌ବୋଧ ନିମନ୍ତେ ଏଠାରେ ତାଙ୍କ ରଚନାରୁ କେତେକ ଶ୍ଳୋକ ଉଦ୍ଧୃତ ହେଲା :—

ବିଟଳକୁ-ଆଲିଙ୍ଗନ                    କରି ଜାହ୍ନବୀ-ଶୋଭନ
ହୃଦରେ ସୁରବର-ଚାପ ଶୁଭ୍ର ଧାରା ସେ ।
ବନ୍ଧେ ମକର-କେତନ                    ଉଜ୍ଜଳ ରତ୍ନ ସମାନ
ପୂରିତ ହୋଇଛି ପୁଣି ଅଶେଷ ରସେ ।
ବନ୍ଦ୍ୟ ହେମବର୍ଣ୍ଣ ପଦରେ ।
ଶକେଣ୍ଟ ତୋଷଦାମା ବେନ ମତରେ । ୧ ।

ବିଷ୍ଣୁପଦୀ, ବିଷ୍ଣୁପଦ,                    'ଈ'କାର ଭେଦ ଶାବଦ
ତରଣୀର ଗତାଗତ ତହିଁ ଉଚିତ ।
ବିଶାରଦ ସେ ସାମନ୍ତ                    ମଣ୍ଡରେ ଦାସ ସେବିତ
ତାଙ୍କୁ ନ ଶୁଣନ୍ତେ ରଘୁନାଥ-କଥିତ ।
ବିଷଧର ପ୍ରାୟେ କି ଭୁଜ ?
ବାନ୍ତର ନେଇ ତାଳ ଶୁଦ୍ଧା ଉଦାର ନୋହି । ୨ ।

ବଧୀର ନୁହଇ ଶିର                    ବୋଇଲା ତହୁଁ ଧୀବର
ଶୁଣିଲଣି ପଥରେ ପଥର ଅବଳା ।
ବାଲି ପଡ଼ୁ ତୋ ଚରଣେ                    ଆଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା ।
ବୃତ୍ତି ଏ ମୋ ପୋଷେ କୁଟୁମ୍ବ ।
ବସାଇ ନ ଦେବି ପାଦ ନ ଧୋଇ ନାବ । ୩ ।

ବଢ଼ାଇ ଦେଲେ ପସ୍ମର                    ଭାବଗ୍ରାହୀ ରଘୁବର,
ବସନେ କ୍ଷାଳିତ କରି ଚରଣ ପୋଛି ।
ବ୍ରହ୍ମାରେ ଧୌତ ଯେ ପଦ                    ନୋହିଛି ଶିବ ବିଷାଦ
ନ ପାଇ ଚରଣାମୃତ ପାନ କୁ ଇଚ୍ଛି ।
ବିଜ୍ଞମ କୈବର୍ତ୍ତ ଧୋଇଲା ।
ବିଶ୍ୱେ ପତିତପାବନ ନାମ ରହିଲା । ୪ ।

—✻—

# ଅଭିମନ୍ୟୁ ସାମନ୍ତ ସିଂହାର

ଯାଜପୁର ଅନ୍ତଃପାତି ବାଲିଆ ଗ୍ରାମରେ ଅଭିମନ୍ୟୁ କ୍ଷତ୍ରିୟକୁଳରେ ୧୭୫୭ରେ ଜନ୍ମଗ୍ରହଣ କରିଥିଲେ ଏବଂ ୧୮୦୬ରେ ବୈକୁଣ୍ଠଲାଭ କରିଥିଲେ ।

ଅଭିମନ୍ୟୁ ଉପେନ୍ଦ୍ର ଭଞ୍ଜଙ୍କ ପଥର ପଥିକ । ଅଳଙ୍କାର ବିନ୍ୟାସରେ ସେ ଉପେନ୍ଦ୍ର ଭଞ୍ଜଙ୍କ ଭଳି ପାଠକର ବିସ୍ମୟ ଉତ୍ପାଦନ କରନ୍ତି । କବିତ୍ୱରେ ସେ କିନ୍ତୁ ଉପେନ୍ଦ୍ରଙ୍କୁ ବଳି ଯାଇଛନ୍ତି । ତାଙ୍କ କବିତାରେ ଦାର୍ଶନିକତାର ବିଶେଷ ପ୍ରମାଣ ମିଳେ । ଏଣୁ ପଣ୍ଡିତମାନେ ତାଙ୍କ ରଚନାକୁ ବିଶେଷ ଆଦର କରନ୍ତି । ଅଭିମନ୍ୟୁ ଓଡ଼ିଆ କାବ୍ୟରେ ଏକ ଶୀର୍ଷ ସ୍ଥାନ ଅଧିକାର କରିଛନ୍ତି ।

ଅଭିମନ୍ୟୁଙ୍କ ରଚନା ମଧ୍ୟରେ 'ବିଦଗ୍ଧ ଚିନ୍ତାମଣି', 'ସୁଲକ୍ଷଣା' ଓ 'ରସବତୀ' ପ୍ରଧାନ । ବିଦଗ୍ଧ ଚିନ୍ତାମଣିର କେତେକ ଛାନ୍ଦ ଏତେ ସରସ ହୋଇଅଛି ଯେ, ତାହା ପୁରପଲ୍ଲୀରେ ଗୃହେ ଗୃହେ ଲୋକେ ଆବୃତ୍ତି କରନ୍ତି । କେତୋଟି ଉଦାହରଣ ଏଠାରେ ପ୍ରଦତ୍ତ ହେଲା ।

ଶ୍ରୀରାଧା ବାତୁଳୀ ପ୍ରେମରସାତୁଳୀ ଯେବେ ଚହ୍ଲାରି ଗ୍ରାହକମାନେ ।
କୃଷ୍ଣ ଅତି ଯତନେ ଦୂତିକାକୁ ଦାନେ ପଚାରନ୍ତି କର ଧରି ନିଜେ ।
ପ୍ରାଣବନ୍ଧୁ ଗୀତ । କହି ନମା ତ୍ରିଭଙ୍ଗିକ କରି ଚିତ୍ତ ।
ହସି ଦୂତୀ ଭାଷେ ପ୍ରେମଜଳେ ଭାସେ ବିହ୍ୱଳିତ ମତି ହେବାରିତ ।

କାଳିଆ କମଳ ଦେଖିଲେ କମଳ ନୟନରେ ହୁଏ ଜରଜର ।
ଦେଖି ନବଘନ ଚାରୁ ଅପଘନ ପୁଲକ ହୁଅଇ ଥର ଥର ।
ଘନ ସୁନ୍ଦର ହେ । ଯମୁନା ଯିବାକୁ ଡର ଡର ।
ଏ ଅତି ବିଚିତ୍ର କଜ୍ଜଳରେ ଚିତ୍ର ଲେଖି ଚୁମ୍ବ ଦିଏ ବାର ବାର ।

ଦେଖି ତମାଳକୁ ବିଗୁଣି କାଳକୁ ସଜ ହେଉଥାଇ ବାହୁଯୁଗ ।
ଶ୍ୟାମ ନିବାସରେ ଆଶା ମାନସରେ କଳାବତୀ ସଙ୍ଗେ ଅନୁରାଗ ।
ରସଶେଖର ହେ । ଭୂଷଣ ମହେନ୍ଦ୍ର ମଣିବର ।
ବସି ରମାବର ଫିଟାଇ କବର ଦେଖୁଥାଇ ଥୋଇ ହୃଦେ ତାର ।

ଧୀରେ ଯେନ କାନନରେ କୃଷ୍ଣ ବଳମ୍ବିତ ।
ବାତ୍ସଲ୍ୟ ମମତା ଯେନ ସାକ୍ଷାତ୍ ମାତ ।
କଳାମାଣିକରେ ।

ନଧନସଙ୍ଖାଳ ମୋର ଦରିଦ୍ର ପସରା ।
ଅନ୍ଧର ଲଉଡ଼ି ବାବୁ ହୃଦରତ୍ନ ହାରା ।
କଳାମାଣିକରେ ।

ମୋ ଜୀବଜୀବନ ତୁହି ନୟନ ପ୍ରତିମା ।
ତୋତେ କି ପାସୋରି ହେବ ମୋର ସୁଃଖସୀମା ।
କଳାମାଣିକରେ ।

ଉଡୁଥାଉ ଅନ୍ଧାରିକୁ ରଖିଯାଉ ତୋରୁ ।
ଜନକ ଜନନୀ ସୁଖ କାହା ପାଇଁ ମାରୁ ।
କଳାମାଣିକରେ ।

× × × ×

ମନଲୁ ନାହିଁ କାହିଁ ପାଇଁ ତୋ କଠଉ କଥା ।
ବନେ କଣ୍ଟା ଲଗି ହୁଏ ହୃଦପାଦ ବ୍ୟଥା ।
କଳାମାଣିକରେ ।

—o—

## ଭକ୍ତଚରଣ ଦାସ

ଖୋର୍ଦ୍ଧା ଅନ୍ତଃପାତୀ ସୁନଖଳା ଗ୍ରାମରେ ବୈରାଗୀଚରଣ ପଟ୍ଟନାୟକ ଆନୁମାନିକ ୧୭୩୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସେ ବୈଷ୍ଣବ ଧର୍ମ ଗ୍ରହଣକରି ଭକ୍ତଚରଣ ଦାସ ନାମରେ ଖ୍ୟାତ ହୋଇଥିଲେ । ସେ ବିଷ୍ଣୁ ବା ଶ୍ରୀକୃଷ୍ଣଙ୍କ ପରମ ଭକ୍ତ ଥିଲେ । ସେ ୧୮୦୫ ଖ୍ରୀଷ୍ଟାବ୍ଦରେ ବୈକୁଣ୍ଠ ଗମନ କରିଥିଲେ ।

ଭକ୍ତଚରଣ କବି ରୂପେ ଅନେକ କାବ୍ୟ ରଚନା କରି ଖ୍ୟାତି ଅର୍ଜନ କରିଛନ୍ତି । ତାଙ୍କ ରଚନା ମଧ୍ୟରେ ମଥୁରାମଙ୍ଗଳ ଓ ମନବୋଧ ଚଉତିଶା ଅତି ପ୍ରସିଦ୍ଧ ଓ ଜନପ୍ରିୟ । ଏହା ପୁରପଲ୍ଲୀରେ ଗୃହେ ଗୃହେ

ବଦ୍ଧତ ଏବଂ ଜନସାହିତ୍ୟ ଆକାର ଧରିଅଛି । ପୂର୍ବେ ସେତେବେଳେ ସ୍କୁଲ ନ ଥିଲା ଏବଂ ଆଧୁନିକ ଧରଣରେ ପାଠ୍ୟପୁସ୍ତକ ଲିଖିତ ହୋଇ ନଥିଲା, ଚାଟଶାଳୀମାନଙ୍କରେ ଭକ୍ତଚରଣଙ୍କ ରଚିତ ମଥୁରାମଙ୍ଗଳ, ମନବୋଧ ଚଉତିଶା ଓ କଳାକଳେବର ଚଉତିଶା ଅତି ଆଦରରେ ପଢ଼ାଯାଉଥିଲା ।

ଅନ୍ୟାନ୍ୟ ଗ୍ରନ୍ଥରେ ଶ୍ରୀକୃଷ୍ଣଙ୍କ ଚରିତ୍ର ସଙ୍ଗେ କବିମାନେ ରାଧାଙ୍କ ପ୍ରେମର ଆଲୋକ ପାତ କରିଛନ୍ତି; କିନ୍ତୁ ମଥୁରାମଙ୍ଗଳରେ ରାଧାଙ୍କ ଉଲ୍ଲେଖ ନାହିଁ । ଗୋପୀମାନଙ୍କ ଆହେତୁକୀ ଭକ୍ତିର ଉଚ୍ଚ ଆଦର୍ଶ ମଥୁରାମଙ୍ଗଳରେ ଦେଇ କବି କୃଷ୍ଣଙ୍କ ଚରିତ୍ରର ଶ୍ରେଷ୍ଠତା ପ୍ରତିପାଦନ କରିଛନ୍ତି ଏବଂ କୃଷ୍ଣଙ୍କୁ ପରମାତ୍ମା ଓ ଗୋପୀମାନଙ୍କୁ ଜୀବାତ୍ମାରୂପେ ଗ୍ରହଣ କରି କାବ୍ୟକୁ ସର୍ବାଙ୍ଗ-ସୁନ୍ଦର କରିଛନ୍ତି ।

ଭକ୍ତଚରଣଙ୍କ ମଥୁରାମଙ୍ଗଳ, ମନବୋଧ ଚଉତିଶା ଓ କଳାକଳେବର ଚଉତିଶା ଓଡ଼ିଶାରେ ଏପରି ଆଦୃତ ଯେ, ସେ ଆମର ଜାତୀୟ କବିରୂପେ ଉଚ୍ଚ ଆସନ ପାଇଛନ୍ତି । ଯେଉଁ ସରସତା, ସରଳତା ଓ କବିତ୍ୱଉତ୍କର୍ଷ ନିମନ୍ତେ ଭକ୍ତଚରଣ ଏପରି ଶୀର୍ଷ ସ୍ଥାନ ଅଧିକାର କରିଛନ୍ତି, ତହିଁର କେତେକ ନମୁନା ଏଠାରେ ଦିଆ ଯାଉଅଛି :

ଆଉରେ ବାବୁ ଶ୍ୟାମଘନ, ତୁ ଗଲେ ମଧୁଭୁବନ,
କାହା ମୁଖ ଅନାଇଁ ବଞ୍ଚିବି ।
ହେବ ଦଶଦିଗ ଶୂନ୍ୟ ଅସ୍ଥିର ହେବ ଜୀବନ
ନିଶିଦିବସରେ ଝୁରୁଥିବି ମୁଁ ରେ ବାଛୁଧନ ।
ଜୀବନ ବନ୍ଧୁ ଯେସନ୍ତେ କ୍ଷମ
ବନ୍ଧୁ ବିନେ ଯେସନ୍ତେ ଗ୍ରାମଦେଶରେ ।
କାହା ଅଙ୍ଗେ ଚଉସମ ଲେପିବି କରି ସୁଷମ
ନିଦ୍ରାରେ କେ ହେଉଥିବ ଘାରି
କାହାକୁ ଅଞ୍ଜନ ଦେବି ବସ୍ତ୍ର ପାଡ଼ ଶୁଆଇବି
ମାତାଙ୍କୁ ମାଗିବ କେହ୍ନ ହରିରେ ଜୀବଧନ
ଏକଥା ସୁମରି ଯିବି ମରି,
ନିଷ୍ଟେ ଯେବେ ଯିବୁ ମଧୁପୁରୀରେ ରେ ।

—*—

# ବଳଦେବ ରଥ

କବିସୂର୍ଯ୍ୟ ଊନବିଂଶ ଶତକର ଲୋକ ଏବଂ ୧୮୬୮ରେ ଇହଲୀଳା ଶେଷ କରିଥିଲେ । ତାଙ୍କ ପୂର୍ବପୁରୁଷ ବାଣପୁରର ମଣିପୁର ଗ୍ରାମରୁ ଯାଇ ଗଞ୍ଜାମର ଆଠଗଡ଼ରେ ବାସ କରୁଥିଲେ । ବଳଦେବ ସେହି ଆଠଗଡ଼ରେ ଜନ୍ମ ହୋଇଥିଲେ । ବଳଦେବ କୁଳୀନ ଶାସନୀ ବ୍ରାହ୍ମଣ ।

ବଳଦେବ ସଂସ୍କୃତ ସାହିତ୍ୟରେ ଅତି ବିଦ୍ୱାନ୍ ଓ ସଙ୍ଗୀତ ବିଦ୍ୟାରେ ପାରଙ୍ଗମ ଥିଲେ । ସେ ଅନେକ ସଙ୍ଗୀତ, ଜଣାଣ, ଚଉପଦୀ, ଚଉତିଶା ଓ ଭଜନ ରଚନା କରି ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି କରିଛନ୍ତି । ତାଙ୍କ ସଙ୍ଗୀତରେ ସଂସ୍କୃତ, ଗ୍ରାମ୍ୟ ଓ ବୈଦେଶିକ ଶବ୍ଦ ଏପରି ଦକ୍ଷତା ସହିତ ମିଶି ରହିଛି ଯେ, ସେଗୁଡ଼ିକ ରଚନାର ସୌନ୍ଦର୍ଯ୍ୟ ଭଗ୍ନ ନକରି ବରଂ ବୃଦ୍ଧି କରୁଛି ।

ବଳଦେବଙ୍କ ରଚନା ମଧ୍ୟରେ କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ ବା (ଚମ୍ପୂ) କାବ୍ୟ ଅତି ମଧୁର ସଙ୍ଗୀତ ପୂର୍ଣ୍ଣ ଏବଂ ଉତ୍କଳର



ସର୍ବଜ ଉଚ୍ଚକୋଟିର ସଙ୍ଗୀତ ରୂପେ ଅଦ୍ଭୁତ । ଗୋଟିପୁଅ ନାଚରେ ଏହି ସଙ୍ଗୀତ ଏତେ ସୁନ୍ଦରରେ ବୋଲାଯାଏ ଯେ, ଚମ୍ପୂ ଓଡ଼ିଶାର ଜାତୀୟ ଗୀତ ହୋଇଅଛି । ଚମ୍ପୂ ଯୋଗେ ବଳଦେବ ଉତ୍କଳର ପୁର-ପଲ୍ଲୀରେ ବିଦ୍ୱାନ ଓ ସାଧାରଣ ଜନତା ମଧ୍ୟରେ ସୁପରିଚିତ ଏବଂ ସଙ୍ଗୀତରେ ସର୍ବଶ୍ରେଷ୍ଠ କବିରୂପେ ସମ୍ମାନ ପାଇ ଆସୁଛନ୍ତି ।

ବଳଦେବ ସମସାମୟିକ ଦୃଶ ରାଜା ହରିକିଶୋର ଦେବଙ୍କଠାରୁ 'କବିସୂର୍ଯ୍ୟ' ଉପାଧି ପାଇଥିଲେ । ଶେଷ ଜୀବନ ସେ ଜଳନ୍ତରାରେ କଟାଇଥିଲେ ।

ଖଗପ ତୁ ହେଲୁ ରେ ।

ଖଳାଳେନା ଖଞ୍ଜନାକ୍ଷୀ କ ମାନସ କଲୁ ରେ,
ଖଦ୍ୟ ହୋଇ ସୁରଦ୍ରୁ କୁସୁମ ବାଞ୍ଛିଲୁ ରେ ।
ଖେଦବାନ ନନ୍ଦହୃଦକେଦାରେ ବାଞ୍ଛିଲୁରେ । ୧ ।
ଖିଆଲ୍ ପର କ ଧନ ମନରେ ପାଞ୍ଚିଲୁ ରେ ।
ଖଲକାର ନୋହି କଳାନାଥକୁ ବୁଝିଲୁ ରେ । ୨ ।
ଖାଇଦେଇ କ ଅମଳ ଅଂଚଡା ହୋଇଲୁ ରେ ।
ଖାଇ ଖଣ୍ଡାଧାର ଖଣ୍ଠ ବସ୍ତୁର ଶୋଇଲୁ ରେ । ୩ ।
ଖର ସ୍ଵର ଖୀର୍ଜିକାମ ଗ୍ରାଅଙ୍ଗ ପାଇଲୁ ରେ ।
ଖମଣିମଣ୍ଡଳକୁ ତୁ କର ବଢାଇଲୁ ରେ । ୪ ।
ଖଣ୍ଟେ ଅଷ୍ଟ ଦୁର୍ଗନାଥ ତୋ ପଦେ ପଶିଲୁ ରେ ।
ଖଣ୍ଡକରେ ଧନ ଦେଇ ପଦ ନ କହିଲୁ ରେ । ୫ ।

—:O:—

## ଚୈତନ୍ୟ ଦାସ

ଚୌହାଣ ବଂଶର ପ୍ରତାପରୁଦ୍ର ପଟଣାର ପ୍ରଥମ ରାଜା । ସେ ଖ୍ରୀଷ୍ଟାବ୍ଦ ୧୪୪୭ରୁ ୧୪୮୫ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ଖଡ଼ିଆଳର ମଧ୍ୟ ରାଜା ଥିଲେ । ତାଙ୍କ ରାଜତ୍ୱ କାଳରେ କବି ଚୈତନ୍ୟ ଦାସ ଖଡ଼ିଆଳରେ କବିତା ଲେଖିଥିଲେ ।

ଖଡ଼ିଆଳ ଗ୍ରାମରୁ ପାଞ୍ଚ ମାଇଲ ଉତ୍ତରପୂର୍ବ କୋଣରେ ବଡ଼ୁଳ ଗ୍ରାମ ଅଛି । ସେହି ଗ୍ରାମର ଭାଗୀରଥି ବାବୁ ଚୈତନ୍ୟ କବିଙ୍କୁ ଜମିବାଡ଼ି ଦେଇ ସେହି ଗ୍ରାମରେ ରଖିଥିଲେ ।

ଚୈତନ୍ୟ ଦାସ ଜାତିରେ ମାଳୀ । ତାଙ୍କ ଅଜାଙ୍କ ନାମ ଧର୍ମୋତ୍ତର, ବାପାଙ୍କ ନାମ ବୁଦ୍ଧେଶ୍ୱର ଓ ମାତାଙ୍କ ନାମ ମେଧାବତୀ । ସେ ଧ୍ୟାନ ଦାସଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲେ । ବୈଷ୍ଣବ ହୋଇ ଚୈତନ୍ୟ ଦାସ ବୈଷ୍ଣବ ଧର୍ମଗ୍ରନ୍ଥ ରଚନା କରିଥିଲେ ।

ଚୈତନ୍ୟଙ୍କ ରଚିତ ଗ୍ରନ୍ଥ ମଧ୍ୟରେ ନିର୍ଗୁଣ ମାହାତ୍ମ୍ୟ ଓ ବିଷ୍ଣୁଗର୍ଭ ପୁରାଣ ପ୍ରଧାନ । ସେତେବେଳେ ବୌଦ୍ଧଧର୍ମ ପ୍ରଭାବରେ ବୈଷ୍ଣବ ଧର୍ମ ଅହିଂସା ଓ ଈଶ୍ୱରଙ୍କ ନିରାକାରତ୍ୱ ଦ୍ୱାରା ବିଶେଷ ପ୍ରଭାବିତ ହୋଇଥିଲା । ଚୈତନ୍ୟ ଦାସ ନିର୍ଗୁଣ ବ୍ରହ୍ମ ଉପାସକ ଓ ସାଂଖ୍ୟ ବେଦାନ୍ତବାଦୀ ବୈଷ୍ଣବ ଥିଲେ । ତାଙ୍କ ଗ୍ରନ୍ଥମାନଙ୍କରେ ସେହି ମତ ଦେଖାଯାଏ ।

ଚୈତନ୍ୟ ଦାସଙ୍କ ପୂର୍ବୋକ୍ତ ଦୁଇ ଗ୍ରନ୍ଥ କଟକର ପ୍ରାଚୀ ସମିତି ତାଳପତ୍ରରୁ ସଂଗ୍ରହ କରି ଛାପିଛନ୍ତି । ସେଗୁଡ଼ିକ ଉଚ୍ଚ ଧରଣର ଭକ୍ତିଗ୍ରନ୍ଥ । କେତୋଟି ମାତ୍ର ପଦ ଏଠାରେ ଉଦ୍ଧାର କରାଯାଉଅଛି :—

| | |
|---|---|
| ତୁ ଅଟୁ ସବୁରି ଠାକୁର | । ତୋତେ କମିଷେ ନାହିଁ ଡର । |
| ଦୁଃଖ ସଙ୍କଟ ମନ ଭ୍ରାନ୍ତି | । ଅନେକ ଲୋକ ଗୁହାରନ୍ତି । |
| ଭଜିତ କରି ତୋ ଚରଣେ | । ତୋ ନାମ ଭାବୁଥାନ୍ତି ମନେ । |
| ଚଉଦ ବ୍ରହ୍ମଣ୍ଡର କଥା | । ତୋ ମନେ ଲାଗୁଥାଇ ଚିନ୍ତା । |
| ଚଉଦ ବ୍ରହ୍ମାଣ୍ଡେ ଯେତିକ | । ସବୁଙ୍କୁ ଦେଉ ପଡ଼ ଭାତ । |

× × × ×

| | |
|---|---|
| ପବନ ଚନ୍ଦ୍ର ଦିବାକର | । ଏହାଙ୍କୁ ଦଣ୍ଡେ ନାହିଁ ଡର । |
| ଘର ଗମନେ ଘିଷା ପାଇ | । କ୍ଷଣେ ବିଶ୍ରାମ କାହିଁ ନାହିଁ । |

—ଃ୦ଃ—

## ଭୀମଭୋଇ

ସମ୍ବଲପୁର ଜିଲ୍ଲାର ପୂର୍ବପଟକୁ ଏବେ ରେଢ଼ାଖୋଲ ସବ୍‌ଡିଭିଜନ ଅଛି । ଭାରତ ସ୍ୱାଧୀନ ହେବା ପୂର୍ବେ ରେଢ଼ାଖୋଲ ଏକ ଗଡ଼ଜାତ ରାଜ୍ୟ ଥିଲା । ଭୀମ ଭୋଇ ୧୮୫୫ ଖ୍ରୀଷ୍ଟାବ୍ଦରେ ରେଢ଼ାଖୋଲ ରାଜ୍ୟରେ ଜନ୍ମିଥିଲେ । ସେ ଜାତିରେ କନ୍ଧ ଥିଲେ ଏବଂ ବାରଲକ୍ଷ ବର୍ଷ ବୟସରେ ସୋନପୁରର ଖଲିଆପାଲି ଗ୍ରାମରେ ଇହଲୀଳା ସାଙ୍ଗ କରିଥିଲେ ।

ଲୋକେ କହନ୍ତି, ସେ ଜନ୍ମରୁ ଅନ୍ଧ ଥିଲେ ଏବଂ ପାଠଶାଠ କରୁ ପଢ଼ି ନଥିଲେ । କେହି କେହି କହନ୍ତି, ଭୀମ ଭୋଇ ଅନ୍ଧ ନଥିଲେ ।

ଜନ୍ମ ସମୟରେ ଭୀମ ଭୋଇଙ୍କ ପିତା ମରିଯାଇଥିଲେ । ତେଣୁ ସେ ଖାଇବାକୁ ପାଉ ନ ଥିଲେ । ପେଟ ପୋଷିବା ପାଇଁ ବାରବର୍ଷ ବୟସରେ ତାଙ୍କୁ ଅନ୍ୟର ଗୋରୁ ଚରାଇବାକୁ ହେଉଥିଲା ।

ଭୀମ ତାଙ୍କ ରଚିତ ସ୍ତୁତିଚିନ୍ତାମଣି ଗ୍ରନ୍ଥରେ କହିଛନ୍ତି—

ଦୈବେ ଧର ପିତା ଛାଡ଼ିଗଲେ ମୋତେ ଜନ୍ମରୁ ନିପାଖା ହୋଇ
ସ୍ଵପ୍ନ ଭୋଜନ ସୁଖଭୋଗ ବାଞ୍ଛିଲେ କାହିଁରୁ ପାଇବି ମୁହିଁ ।

× × ×

ବାର ବରଷରୁ ବତ୍ସଙ୍କ ସଙ୍ଗତେ ବନେ ବୁଲି ଦିନ ଗଲେ ।

× × ×

ବତ୍ସ ଗଲେ ଚରି ପଛେ ଅନୁସରି ବୁଲୁଥାଇ ସଙ୍ଗେ ସଙ୍ଗେ ।
କହେ ଭୀମ ଭୋଇ ପୂର୍ବକାଳ କଥା କଷ୍ଟ ହୁଅଇ ଅଙ୍ଗେ ।

ଭୀମ ଭୋଇ ନିରକ୍ଷର ଥିଲେ । ଯୋଗୀ, ସନ୍ନ୍ୟାସୀ, ପଣ୍ଡିତମାନଙ୍କ ସଙ୍ଗେ ମିଳାମିଶା କରି ଧର୍ମ ଓ ଈଶ୍ୱର ତତ୍ତ୍ୱ ବହୁତ ଆଲୋଚନା କରି ଜାଣିଥିଲେ । ଫଳରେ ଏହାଦ୍ୱାରା ତାଙ୍କର ଉଚ୍ଚ ଧରଣର ଦର୍ଶନ ଶିକ୍ଷା ହୋଇଥିଲା । ସେ ଅନେକ ବହି ରଚନା କରିଛନ୍ତି । ତାଙ୍କ ରଚିତ ପୁସ୍ତକ ମଧ୍ୟରେ ସ୍ତୁତିଚିନ୍ତାମଣି, ଭଜନମାଳା ଓ ଅଲେଖ ମହିମା ପ୍ରଧାନ । ସେଗୁଡ଼ିକ ଅତି ଉଚ୍ଚ ଧରଣର ଦାର୍ଶନିକ କବିତା । ଏବେ କଟକର ପ୍ରାଚୀ ସମିତି ସେଗୁଡ଼ିକ ତାଳପତ୍ର ଲେଖାରୁ ସଂଗ୍ରହ କରି ଛାପିଛନ୍ତି ।

ଭୀମ ଭୋଇ ମୁହେଁ ମୁହେଁ କବିତା ରଚନା କରୁଥିଲେ । ତାଙ୍କ ଶିଷ୍ୟମାନେ ସେହି କବିତାକୁ ତାଳପତ୍ରରେ ଲେଖି ରଖୁଥିଲେ । ଏହି କବିତାମାନ ବିଦ୍ୱାନମାନେ ଏବଂ କୁମ୍ଭୀପଟିଆ ବାବାଜୀମାନେ ବହୁତ ଆଦରରେ କରି ପଢ଼ନ୍ତି । ସେଥିରେ ଶରୀରଭେଦ ଏବଂ ଈଶ୍ୱରଙ୍କ ଏକତ୍ୱ ଓ ନିରାକାରତ୍ୱ ବର୍ଣ୍ଣିତ ହୋଇଛି ।

ଗୋଟିଏ ଦୁଇଟି କବିତା ଏଠାରେ ଉଦ୍ଧାର କଲେ, ତୁମେମାନେ ତାଙ୍କ କବିତାର ମୂଲ୍ୟ ବୁଝିପାରିବ ।

ନୁହନ୍ତି ସେ ଗୁରୁ ନୁହନ୍ତି ସେ ଶିଷ୍ୟ ନାହିଁ ସାଆନ୍ତ ସେବକ ।
ନୁହନ୍ତି ବ୍ରାହ୍ମଣ ନୁହନ୍ତି ଚଣ୍ଡାଳ ନୁହନ୍ତି ସେ ବଡ଼ଲୋକ ।
ନୁହନ୍ତି ସେ ସ୍ତ୍ରୀଗ ନୁହନ୍ତି ପୁରୁଷ ନୁହନ୍ତି ଅନ୍ତ୍ରିଗ ମାଈ ।
ନୁହନ୍ତି ସେ ପିତା ନୁହନ୍ତି ସେ ପୁତ୍ର ନୁହନ୍ତି ଭଉଣୀ ଭାଇ ।
ନୁହନ୍ତି ସେ କ୍ଷୀର ନୁହନ୍ତି ସେ ନୀର ନୁହନ୍ତି ଦୁଗ୍ଧ ମଧୁର ।
ନୁହନ୍ତି ସେ କଷା ନୁହନ୍ତି ସେ ପିତା ନଥାଇ ଶୋଭା ସୁନ୍ଦର ।
ନାହିଁ ତାଙ୍କ ଜାତି ନାହିଁ ତାଙ୍କ ଗୋତ୍ର ନ ଥାଇ ବାଛ ବେଭାର ।
ବେନି ଜନ ଏକ ଆତ୍ମାମନ ହୋଇ କରୁଅଛନ୍ତି ସଂସାର ।
ନୁହନ୍ତି ସେ ଜଳ ନୁହନ୍ତି ପବନ ନୁହନ୍ତି ରୂପ ଅରୂପ ।
ନୁହନ୍ତି ସେ ଜ୍ଞାନ ନୁହନ୍ତି ଅଜ୍ଞାନ ନ ମଣେ ବେଦ କଳପ ।
ନୁହନ୍ତି ସେ ପାପ ନୁହନ୍ତି ସେ ପୁଣ୍ୟ ନୁହନ୍ତି ସେ ସେବା ଭକ୍ତି ।
ନୁହନ୍ତି ସେ କାମ ନୁହନ୍ତି ସେ କ୍ରୋଧ ନୁହନ୍ତି କ୍ଷତ ସେ ହସ୍ତି ।
ନୁହନ୍ତି ସେ କାଳ ନୁହନ୍ତି ସେ ମୃତ୍ୟୁ ନୁହନ୍ତି ଶୁଭ ଅଶୁଭ ।
ନାହିଁ ପତିପତ୍ନୀ ସକଳ ଜାଣନ୍ତି ଏକ ଅଙ୍ଗ ସବୁ ଭୋଗ ।

(ସୁତଚନ୍ଦ୍ରାମଣି)

ଭେଟ ପାଇଲେ କରନ୍ତି ବିନତି ।
କରପତ୍ର ଯୋଡ଼ି ପାଦତଳେ ପଡ଼ି ଦୁଃଖସୁଖ ମୋର ଜଣାନ୍ତି ।

( ଯୋଧା )

ହସ୍ତ ନ ଲାଗଇ ପିଣ୍ଡ ଗଢ଼ନ୍ତି । ଜୀବପରମ ଏ ଅଙ୍ଗ ଅଛନ୍ତି ।
ଭିନ୍ନ ଭିନ୍ନ କରି ଥୋଇଛନ୍ତି ବାରି ଏକଠାରେ ଯୁବା ଯୁବତି ।
ଝିଅ ନ ନେଇ ଜୁଆଇଁ ବୋଲନ୍ତି । ଯୋଗ ନାହିଁ ବନ୍ଦାପନ୍ଦା ହୁଅନ୍ତି ।
ଏକା ଘରେ ଥାଇ ଛୁଆଁ ଛୁଇଁ ନାହିଁ କରୁଛନ୍ତି ସୁଖ ସୁରତି ।
ପାଶେ ଥାଇ ଦୂରାନ୍ତରେ ନବାରି । ଛପନ କୋଟି କୁଟୁମ୍ବକୁ ଆଦରି ।

ଭଣ୍ଡାର ନଥାଇ ପଡ଼ି ବାଣ୍ଟୁଛନ୍ତି ପ୍ରତିପାଳ କରୁଅଛନ୍ତି ।
ସେବା ଭକ୍ତି ନାହିଁ ସେବା କରନ୍ତି । ପାଦତଳେ ତ୍ରିପୁର ଖଟନ୍ତି ।
ଯାଚ ନ ଦିଅନ୍ତି ଫଳ ପାଉଛନ୍ତି ସ୍ୱର୍ଗକୁ ନ ଯାଇ ଚଢ଼ୁଅଛନ୍ତି ।
ନାମ ନାହିଁ ଅନାମିକା ପୁରୁଷ । ରୂପ ଥାଇ ଅରୂପରେ ଦୁରୁଶ ।

ନ ଭଜାଇଲ ଆପେ ପ୍ରସନ୍ନ ହୁଅନ୍ତି ନାହିଁ ଦେଖି ବ୍ରହ୍ମ ଲୀନ ହୁଅନ୍ତି ।
ଡକ୍କା ନ ବାଜନ୍ତେ ନବ ଖଣ୍ଡରେ । ଶ୍ରିଦ ଶୁଭିଲାଣି ଭିନ ପୁରରେ ।
ଭଣେ ଭୀମ ଭୋଇ ଅରୂପକୁ ଧ୍ୟାଇ ଗୁରୁଚରଣରେ ରହୁ ମୋ ମତି ।
( ଭଜନମାଳା )

ଭୀମ ଭୋଇ ଟାଙ୍ଗରପାଲିର କାମଗାଁ ଗ୍ରାମରେ ଭଗବତ ଘରେ ଭାଗବତ ଶୁଣୁଥିଲେ । ଷୋହଳ ବର୍ଷ ବୟସରେ ସେ ଢେଙ୍କାନାଳର ଅଲେଖ ଧର୍ମପୀଠକୁ ଗଲେ । ସେଠାରେ ସେ ମହିମା ବା ଅଲେଖ ଧର୍ମତତ୍ତ୍ୱ ଶିକ୍ଷାକରି କଣ୍ଠୁଦନ ପରେ ସେହି ଧର୍ମ ଲୋକଙ୍କୁ ଶିକ୍ଷାଦେଲେ । ତାଙ୍କ ବୁଦ୍ଧି ଓ ବିଦ୍ୟା ଦେଖି ତାଙ୍କର କେତେକ ଶିଷ୍ୟ ହେଲେ । ସେ ସେଠାରୁ ସୋନପୁରର ଖାଲିଆପାଲିରେ ଏକ ଆଶ୍ରମ ସ୍ଥାପନ କଲେ । ସେଠାରେ ତାଙ୍କର ମୃତ୍ୟୁ ଘଟିଥିଲା ।

ହରିପଣ୍ଡା ଆଦି କେତେକ ବ୍ରାହ୍ମଣ ମଧ୍ୟ ଭୀମ ଭୋଇଙ୍କ ଶିଷ୍ୟ ହୋଇଥିଲେ । ହରିପଣ୍ଡା ଓ ତାଙ୍କ ଭାଇ ବାସୁଦେବ ପାଠପାଠ ପଢ଼ିଥିଲେ । ତେଣୁ ସେମାନେ ଭୀମ ଭୋଇଙ୍କ ରଚନାବଳୀ ଲେଖି ରଖିଥିଲେ ।

ଭୀମ ଭୋଇ ପ୍ରତିମାପୂଜା ନିନ୍ଦା କରୁଥିଲେ । ସେ ପୁରୀର ଜଗନ୍ନାଥଙ୍କୁ ମଧ୍ୟ କାଠ ବୋଲି କହୁଥିଲେ । ତାଙ୍କ ଶିଷ୍ୟମାନେ ଥରେ ଜଗନ୍ନାଥଙ୍କ ପ୍ରତିମାକୁ ପୋଡ଼ିଦେବେ ବୋଲି ପଣ୍ଡାମାନଙ୍କ ସଙ୍ଗେ କଳି କଲେ । ପଣ୍ଡାମାନେ ଜଣେ ଶିଷ୍ୟକୁ ମାରି ପକାଇଲେ; ବାକିମାନଙ୍କୁ ଦେଉଳରୁ ଘଉଡ଼ିଦେଲେ ।

—o—

## ରାଧାନାଥ ରାୟ

୧୯୧୧ ପର୍ଯ୍ୟନ୍ତ ବଙ୍ଗଳା, ବିହାର ଓ ଓଡ଼ିଶା ଗୋଟିଏ ପ୍ରଦେଶ ଥିଲା । କଲିକତା ଏହି ପ୍ରଦେଶର ରାଜଧାନୀ ଥିଲା । ତେଣୁ ବଙ୍ଗାଳୀମାନେ ଚାକିରି ବିଷୟରେ ସୁବିଧା ସହଜରେ ପାଉଥିଲେ । ଏପରି କି ଓଡ଼ିଶାର

ସ୍କୁଲ୍ କଲେଜରେ ମଧ୍ୟ ବଙ୍ଗାଳୀମାନେ ଅଧିକାଂଶ ସଂଖ୍ୟାରେ ଶିକ୍ଷକ ଥିଲେ ।

ଓଡ଼ିଶାର ଏହି ବଙ୍ଗାଳୀ କର୍ମଚାରୀଗୋଷ୍ଠୀ, ଓଡ଼ିଆ ବଙ୍ଗଳାର ଏକ ଉପଭାଷା ଓ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ଏକ ଆନ୍ଦୋଳନ ଆରମ୍ଭ କଲେ । ସେମାନେ ସ୍କୁଲ୍ କଲେଜରୁ ଓ କଚେରିରୁ ଓଡ଼ିଆ ଭାଷା ଉଠାଇ ଦେବାକୁ ଚେଷ୍ଟା କଲେ । ଏହି ଆନ୍ଦୋଳନ ବିରୋଧରେ ତୀବ୍ର ବିରୋଧ ହୋଇଥିଲା । ଓଡ଼ିଶାର ଜଣେ ଖ୍ରୀଷ୍ଟାନ ଧର୍ମପ୍ରଚାରକ ସାହେବ ଫିଲ୍ସ, ଏବଂ ଓଡ଼ିଶାର ତଦାନୀନ୍ତନ ପ୍ରଧାନ ବ୍ୟକ୍ତି ବିଚ୍ଛନ୍ଦଚରଣ ପଟ୍ଟନାୟକ, ଗୌରୀଶଙ୍କର ରାୟ, ନନ୍ଦକିଶୋର ଦାସ, ପ୍ୟାରୀମୋହନ ଆଚାର୍ଯ୍ୟ, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ଆଦି ଏହି ବିରୋଧର ନେତୃତ୍ୱ ନେଇଥିଲେ ।

ସେତେବେଳେ ସ୍କୁଲ କଲେଜରେ ପଢ଼ା ହେବା ଲଗି ଓଡ଼ିଆରେ ପାଠ୍ୟପୁସ୍ତକ ନଥିଲା । ସେଥିଲାଗି ରାଧାନାଥ ରାୟ ଓ ମଧୁସୂଦନ ରାଓ ପାଠ୍ୟ ପୁସ୍ତକ ହେବା ଭଳି ଓଡ଼ିଆ ସାହିତ୍ୟ ଲେଖା ଆରମ୍ଭ କଲେ । ଏହି ସାହିତ୍ୟ ଆଧୁନିକ ସାହିତ୍ୟ ଲେଖାର ସୂତ୍ରପାତ କଲା । ଇଂରାଜୀ ଓ ବଙ୍ଗଳାର ଆଦର୍ଶରେ ରାଧାନାଥ କେତେକ କବିତା ଲେଖିଲେ ଏବଂ ମଧୁସୂଦନ ଗଦ୍ୟପ୍ରବନ୍ଧ ଓ କବିତା ବହୁ ସଂଖ୍ୟାରେ ପ୍ରଣୟନ କଲେ । ଏହି ଦୃଷ୍ଟିରୁ ରାଧାନାଥ ଓଡ଼ିଶାର ନୂତନ ସାହିତ୍ୟର ସ୍ରଷ୍ଟା ଏବଂ ମଧୁସୂଦନ ଓଡ଼ିଶାର ନବ ଶିକ୍ଷିତ ସମାଜର ପିତା ।

ରାଧାନାଥ ୧୮୪୮ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱର ଜିଲ୍ଲା ସୋରଠାରେ ନିକଟବର୍ତ୍ତୀ କେଦାରପୁର ଗ୍ରାମରେ ଜନ୍ମ ହୋଇଥିଲେ । ଏହାଙ୍କ ପିତାଙ୍କ ନାମ ମୁନ୍ସିର ନାରାୟଣ ରାୟ ଓ ମାତାଙ୍କ ନାମ ତାରିଣୀ ଦାସୀ ।

ରାଧାନାଥ ମେଧାବୀ ଛାତ୍ର ଥିଲେ ଏବଂ ବାଲେଶ୍ୱର ଜିଲ୍ଲା ସ୍କୁଲରୁ ସରକାରୀ ବୃତ୍ତି ପାଇ କଲିକତା କଲେଜରେ ପଢ଼ିବାକୁ ଯାଇଥିଲେ; କିନ୍ତୁ ଦୁର୍ବଳ ସ୍ୱାସ୍ଥ୍ୟ ଯୋଗୁଁ କଲେଜ ଛାଡ଼ି ଚାଲିଆସିଲେ ଏବଂ ବାହାର ଛାତ୍ର ରୂପେ ଏଫ୍. ଏ. ପରୀକ୍ଷାରେ ପାସ କରିଥିଲେ । ତାପରେ ସେ ସ୍କୁଲ ଶିକ୍ଷକରୁ

କ୍ରମେ ଉନ୍ନତ କରି ଓଡ଼ିଶା ବିଭାଗ ସ୍କୁଲ ଇନ୍‌ସପେକ୍ଟରର ପଦକୁ ଉନ୍ନୀତ ହୋଇଥିଲେ ।



ଇଂରାଜୀ, ସଂସ୍କୃତ, ଓଡ଼ିଆ ଓ ବଙ୍ଗଳା ପ୍ରଭୃତି ସାହିତ୍ୟରେ ରାଧାନାଥ ବହୁତ ଅଧ୍ୟୟନ ଓ ଗଭୀର ପାଣ୍ଡିତ୍ୟ ଅର୍ଜନ କରିଥିଲେ । ତାଙ୍କ ଅମଳରେ ବଙ୍ଗଳା ସାହିତ୍ୟର ନବୀନ ଯୁଗ ବିଶେଷ ଅଗ୍ରସର କରିଥିଲା । ରାଧାନାଥ ବଙ୍ଗ ସାହିତ୍ୟର ଆଦର୍ଶରେ ଓଡ଼ିଆ ସାହିତ୍ୟରେ ନବଯୁଗ ଆନୟନ କଲେ । ତାଙ୍କ ପଦାଙ୍କ ମଧୁସୂଦନ, ଫକୀର ମୋହନ ଓ ଗଙ୍ଗାଧର ଅନୁସରଣ କଲେ ।

କବି ରୂପେ ରାଧାନାଥଙ୍କ ପ୍ରତିଭା ଓ କୃତି ଅତି ଉଚ୍ଚକୋଟିର । ସେ ପ୍ରକୃତି ବର୍ଣ୍ଣନା ଓ ଚରିତ୍ର ଚିତ୍ରଣରେ ଅତି ଧୁରନ୍ଧର । ଶବ୍ଦ ଯୋଜନାରେ ତାଙ୍କୁ ଉତ୍କୃଷ୍ଟ ବହ୍ମାଣୀ ବୋଲି ସମସ୍ତେ ସ୍ୱୀକାର କରନ୍ତି । ସେ ବ୍ୟବହାର କରିଥିବା କୌଣସି ଶବ୍ଦକୁ ଉଠାଇ, ତାଙ୍କ କବିତାରେ ଅନ୍ୟ ଶବ୍ଦ ଯୋଜନା କଲେ କବିତାର ସୌନ୍ଦର୍ଯ୍ୟ ଓ ଲାଳିତ୍ୟର ହାନି ଘଟିବ । ସର୍ବୋପରି ରାଧାନାଥ ପ୍ରାଚୀନ କାବ୍ୟ କବିତାର ଶୈଳୀ ଛାଡ଼ି, ଆଧୁନିକ କାବ୍ୟକବିତାର ସୃଷ୍ଟି କରି ଏବଂ ସାହିତ୍ୟ କ୍ଷେତ୍ରରେ ନୂଆ ମାର୍ଗ ଦେଖାଇ, ଓଡ଼ିଶାରେ ଚିର ସ୍ମରଣୀୟ ହୋଇଛନ୍ତି ।

ରାଧାନାଥଙ୍କ କାବ୍ୟ ମଧ୍ୟରେ ମହାଯାତ୍ରା, ଚିଲିକା ଓ ଦରବାର ପ୍ରସିଦ୍ଧ । ସେ କି ପ୍ରକାର ସରସ କବିତା ଲେଖିଛନ୍ତି, କିପରି ସୁନ୍ଦର କର୍ଣ୍ଣପ୍ରୀତିକର ଶବ୍ଦ ଯୋଜନା କରିଛନ୍ତି ଏବଂ କବିତାରେ କି ପ୍ରକାର ଉଚ୍ଚଭାବ ସନ୍ନିବେଶ କରିଛନ୍ତି, କେତୋଟି ପଦ ତାଙ୍କ ରଚନାରୁ ଉଦ୍ଧାର କଲେ ତାହା ସ୍ପଷ୍ଟ ପ୍ରତିପନ୍ନ ହେବ ।

(୧) କେଉଁଠି ରହି ନାହାନ୍ତି ରହିବେ ନାହିଁଟି ଉତ୍ତରଙ୍ଗ ଭୂମିତଳେ,<br>
ସମସ୍ତେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ ।

ଚିରଦିନ ପାଇଁ ନୁହନ୍ତି କାହାର କର୍ମଭୂମି ସୁନ୍ଦରୀ,
ଥିବଥିଲେ ରାଜା ନିଜ ଭୁଜବଳେ ଚିରଜୀବୀ ହେବେ ପରା ।

(୨) ସୁନ୍ଦରେ ତୃପ୍ତିର ଅବସାଦ ନାହିଁ ।
ଯେତେ ଦେଖିଲେ ହେଁ ନୂଆ ଦିଶୁଥାଇ ॥
ଦୃଷ୍ଟପୂର୍ବ ହୋଇ ଅଦୃଷ୍ଟ ପ୍ରତୀତ ।
ସୁନ୍ଦରପଣରେ ଚିରନ୍ତନ ଗୀତ ॥

(୩) ଉତ୍କଳର ପୂର୍ବ କୀର୍ତ୍ତି ସ୍ମୃତି ପୂତ ।
ବାରବାଟି ଆଜ ସାଜେ ସଙ୍କୀଭୂତ ॥
ଐତିହାସିକ ଏ ଦୁର୍ଗ ବାରବାଟି ।
କାର ରକ୍ତପିଣ୍ଡେ ଗଢ଼ା ଯାର ମାଟି ॥
ବାରବାଟି ପଡ଼ି ମନ ସ୍ମୃତି ସ୍ରୋତେ ।
ବହିଯାଏ ପ୍ରତିଲୋମେ କାଳସ୍ରୋତେ ॥
କାଳେ କାଳେ କେତେ ଦେଖି ଯେ ଆସିଲା ।
ନଶ୍ୱର ନରର ଗରିମାର ଲୀଳା ॥

× × ×

କାଞ୍ଚୀ ଅଭିଯାନେ ଯେ ଦୁର୍ଗ-ପ୍ରାଚୀର ।
ବାଦ୍ୟନାଦେ ଦେଇଥିଲା ପ୍ରତିଗିର ॥

(୪) ଉତ୍କଳ କମଳାବିଳାସ ଦୀର୍ଘିକା ।
ମରାଳମାଳିନୀ ନୀଳାମ୍ବୁ ଚିଲିକା ॥
ଉତ୍କଳର ଶୁଭ୍ର ଗୃହ ଅଳଙ୍କାର ।
ଉତ୍କଳ ଭୁବନେ ଶୋଭାର ଭଣ୍ଡାର ॥

(ପ୍ରାକୃତିକ ଶୋଭା ଓ ବୈଷୟିକ ବିଭବରେ ଲକ୍ଷ୍ମୀ କ୍ରୀଡ଼ା କରନ୍ତି । ଚିଲିକାର ପ୍ରାକୃତିକ ଶୋଭା ଅତି ରମଣୀୟ । ତହିଁର ପାଣି ନୀଳ । ସେଥିରେ ଧାଡ଼ି ଧାଡ଼ି ଧଳା ମରାଳ ସର୍ବଦା ବିହାର କରନ୍ତି । ନୀଳ ପାଣିରେ ଧଳା ମରାଳ, ନୀଳଗଗନରେ ତାରାଶ୍ରେଣୀ ପରି ସୁନ୍ଦର ଦେଖାଯାନ୍ତି ।

ପ୍ରାଚୀନ କାଳରେ ଚିଲିକା ଓଡ଼ିଶାର ପ୍ରଧାନ ବନ୍ଦର ଥିଲା । ସେଥିପାଇଁ ଓଡ଼ିଶା ଦେଶବିଦେଶରେ ବାଣିଜ୍ୟ କରି ପୃଥିବୀ ମଧ୍ୟରେ ଏକ ଧନଶାଳୀ ଦେଶ ଥିଲା । ଚିଲିକା ଓଡ଼ିଶାକୁ ଲକ୍ଷ୍ମୀଙ୍କ ବିଳାସଭୂମିରେ ପରିଣତ କରିଥିଲା ।

ଓଡ଼ିଶାକୁ ଏକ ନାରୀରୂପେ କଳ୍ପନା କରି, ସ୍ୱାଭାବିକ ସୁଷମା ଆକାରରେ ତାହାର ପ୍ରାକୃତିକ ଶୋଭାକୁ ବର୍ଣ୍ଣନା କରାଯାଇଅଛି ଏବଂ ଚିଲିକାକୁ ଉତ୍କଳର ଧନର କାରଣ ବୋଲି ଜ୍ଞାନ କରି ତାହାକୁ ଓଡ଼ିଶା-ରୂପକ ସ୍ତ୍ରୀର ଅଳଙ୍କାର ରୂପେ କଳ୍ପନା କରାଯାଇଅଛି ।

ସୁତରାଂ, ଚିଲିକା ଓଡ଼ିଶାର ଶୋଭା ଓ ଧନ ଉଭୟ ଦିଗରେ ଏକ ପ୍ରଧାନ ସମ୍ପଦ ।)

ଏପ୍ରକାର ସୁନ୍ଦର ରଚନା କବିଙ୍କ କବିତ୍ୱଶକ୍ତିର ଓ ପ୍ରତିଭାର ସୁନ୍ଦର ନିଦର୍ଶନ ।

ରାଧାନାଥ ୧୯୦୭ ଖ୍ରୀଷ୍ଟାବ୍ଦରେ ସ୍ୱର୍ଗାରୋହଣ କରିଥିଲେ ।

—:O:—

## ମଧୁସୂଦନ ରାଓ

ମଧୁସୂଦନ ରାଓ ରାଧାନାଥଙ୍କ ସମସାମୟିକ କବି ଥିଲେ । ସେ ରାଧାନାଥଙ୍କ ବନ୍ଧୁ ମଧ୍ୟ ଥିଲେ । ଉଭୟେ ଏକତ୍ର ମିଶି ସାହିତ୍ୟ ଚର୍ଚ୍ଚା କରୁଥିଲେ । ମଧୁସୂଦନ ମଧ୍ୟ ଏଫ. ଏ. ପାସ କରିଥିଲେ ଏବଂ କ୍ରମେ ଉନ୍ନତି କରି ଓଡ଼ିଶା ବିଭାଗରେ ସ୍କୁଲ ଇନସ୍‌ପେକ୍‌ଟର ହୋଇଥିଲେ । ସେ ୧୮୫୩ ମସିହାରେ ପୁରୀ ଜିଲ୍ଲାର ଗୋପ ଗ୍ରାମରେ ଜନ୍ମିଥିଲେ ଏବଂ ୧୯୧୨ ରେ ସ୍ୱର୍ଗାରୋହଣ କରିଥିଲେ ।

ଓଡ଼ିଆ ସାହିତ୍ୟରେ ସ୍କୁଲମାନଙ୍କର ପାଠ୍ୟପୁସ୍ତକ ପ୍ରଣୟନ ଲାଗି ରାଧାନାଥ ବିଶେଷ କିଛି ଚେଷ୍ଟା କରି ନଥିଲେ । ସେ କାର୍ଯ୍ୟର ପ୍ରକୃତ ଭାର ଗ୍ରହଣ କରିଥିଲେ ମଧୁସୂଦନ । ସେ ଶିଶୁ ଶ୍ରେଣୀଠାରୁ ଆରମ୍ଭ କରି ପ୍ରାଥମିକ ଓ ମଧ୍ୟ ବିଦ୍ୟାଳୟର ପ୍ରତ୍ୟେକ ଶ୍ରେଣୀ ନିମନ୍ତେ ଓଡ଼ିଆ ସାହିତ୍ୟର ପାଠ୍ୟପୁସ୍ତକ ରଚନା କରିଥିଲେ ଏବଂ କେତେ ଖଣ୍ଡ ଗଣିତ ପୁସ୍ତକ ମଧ୍ୟ ଲେଖିଥିଲେ । ମଧୁସୂଦନ ପ୍ରଣୀତ ପାଠ୍ୟପୁସ୍ତକମାନ ଏପରି ଉଚ୍ଚ ଧରଣର ସୌଷ୍ଠବଯୁକ୍ତ ହୋଇଥିଲା ଯେ, ସ୍କୁଲମାନଙ୍କରେ ପ୍ରଚଳିତ ସମସ୍ତ ପ୍ରାଚୀନ ସାହିତ୍ୟର ପାଠ୍ୟପୁସ୍ତମାନଙ୍କ ପରିବର୍ତ୍ତେ ସେଗୁଡ଼ିକ ପ୍ରଚଳିତ ହୋଇଥିଲା ।



୧୯୩୬ ରେ ପୃଥକ୍ ଓଡ଼ିଶା ପ୍ରଦେଶ ହେବା ପର୍ଯ୍ୟନ୍ତ ଅର୍ଦ୍ଧ ଶତାବ୍ଦୀ କାଳ ମଧୁସୂଦନଙ୍କ ପ୍ରଣୀତ ବହିଗୁଡ଼ିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅପ୍ରତିଦ୍ୱନ୍ଦ୍ୱୀ ହୋଇ ରହିଥିଲା । ଓଡ଼ିଆ ପ୍ରଦେଶ ହେବା ପରେ ସେହି ପାଠ୍ୟପୁସ୍ତକମାନ ଲୋପିଯାଇଛି । ଅନ୍ୟ ଲେଖକ ଓ ପ୍ରକାଶକମାନେ ପାଠ୍ୟସାହିତ୍ୟ ପ୍ରଣୟନର ଚେଷ୍ଟା କରୁଛନ୍ତି; କିନ୍ତୁ କୌଣସି ପାଠ୍ୟପୁସ୍ତକ ମଧୁବାବୁଙ୍କ ଲେଖା ପରି ଅପ୍ରତିଦ୍ୱନ୍ଦ୍ୱୀ, ସର୍ବଜନାଦୃତ ବା ଦୀର୍ଘସ୍ଥାୟୀ ହୋଇ ପାରୁନାହିଁ । ସର୍ବୋପରି "ମଧୁବାବୁ ବର୍ଣ୍ଣବୋଧ" ଏବେ ମଧ୍ୟ ବିଭାଗୀୟ ବାରଣ ନ

ମାନ ସହସ୍ର ସଂଖ୍ୟାରେ ଛପା ହୋଇ ପୁରପଲ୍ଲୀର ଗୃହେ ଗୃହେ ଦେଖାଯାଉଛି ।

ଓଡ଼ିଶାର ଓଡ଼ିଆ ପାଠ୍ୟପୁସ୍ତକ ଅଭାବ ମୋଚନ କରିବା ନିମନ୍ତେ ମଧୁସୂଦନଙ୍କ ସ୍ୱାଭାବିକ ମନୀଷା ଥିଲା । ବିଦ୍ୟାଳୟରେ ଅର୍ଦ୍ଧ ଶତାବ୍ଦୀ କାଳ ତାଙ୍କ ରଚିତ ପାଠ୍ୟପୁସ୍ତକ ପଢ଼ି ଆଧୁନିକ ଶିକ୍ଷିତ ସମାଜ ତିଆରି ହୋଇଛି । ମଧୁସୂଦନଙ୍କ ପୂର୍ବରୁ ଓଡ଼ିଆରେ ଗଦ୍ୟ ଲେଖା ନ ଥିଲା । ସେ ଓ ଫକୀରମୋହନ ଓଡ଼ିଆ ଗଦ୍ୟ ସାହିତ୍ୟର ସ୍ରଷ୍ଟା । ଫକୀରମୋହନ ସାଧାରଣ ସାହିତ୍ୟ ବା ଉପନ୍ୟାସ ପ୍ରଣୟନ କରିଥିଲେ; କିନ୍ତୁ ସ୍କୁଲ ପିଲାଙ୍କୁ ଲକ୍ଷ୍ୟ କରି ମଧୁସୂଦନ ଗଦ୍ୟପଦ୍ୟ ସାହିତ୍ୟ ସୃଷ୍ଟି କରିଥିଲେ ।

ଇଂରେଜ ରାଜତ୍ୱରୁ ଓଡ଼ିଶାରେ ଯେଉଁ ନବଶିକ୍ଷାର ନବଯୁଗ ପ୍ରବର୍ତ୍ତିତ ହୋଇଅଛି, ଯେଉଁ ନବ ସାହିତ୍ୟର ସୃଷ୍ଟି ହୋଇଛି, ଅଧୁନା ଯେଉଁ ଶିକ୍ଷିତ ସମାଜ ଗଢ଼ି ଉଠିଛି, ତହିଁର ପିତା ମଧୁସୂଦନ । ଆଧୁନିକ ସାହିତ୍ୟ ଓ ଶିକ୍ଷାର ପ୍ରବର୍ତ୍ତକ ମଧୁସୂଦନ ।

ମଧୁସୂଦନ ନୈଷ୍ଠିକ ଚରିତ୍ରର ଲୋକ ଏବଂ ଜଣେ ଆଦର୍ଶ ବ୍ୟକ୍ତି ଥିଲେ । ସେ କୁଟିଳତା, ମିଥ୍ୟା ଓ ଅନ୍ୟାୟକୁ ନିତାନ୍ତ ଘୃଣା କରୁଥିଲେ । ସତ୍ୟ ଓ ଈଶ୍ୱରପରାୟଣତା ତାଙ୍କ ପ୍ରାଣକୁ ଓତଃପ୍ରୋତ ଭାବରେ ଆପ୍ଲୁତ କରିଥିଲା । ସେ ବିଶେଷ କିଛି କାବ୍ୟ ଲେଖିନାହାନ୍ତି; କିନ୍ତୁ ଛନ୍ଦ ଓ ଖଣ୍ଡକବିତା ରଚନାରେ ସମସ୍ତଙ୍କୁ ବଳି ଯାଇଛନ୍ତି ଏବଂ ଓଡ଼ିଶାରେ ଏକ ଶୀର୍ଷସ୍ଥାନ ଅଧିକାର କରିଛନ୍ତି । ତାଙ୍କ କବିତାମାନଙ୍କରେ ଈଶ୍ୱରଭକ୍ତି ଓ ଈଶ୍ୱରପରାୟଣତା ଜଡ଼ିତ ଥିବାର ଦେଖାଯାଏ । ସେଥିରୁ ସ୍ପଷ୍ଟ ପ୍ରତିଭାତ ହୁଏ ଯେ; ତାଙ୍କ ହୃଦୟଉତ୍ସରୁ ଈଶ୍ୱରଭକ୍ତି ସ୍ୱତଃ ନିସୃତ ହେଉଥିଲା ଏବଂ ସେ ବିଶ୍ୱପ୍ରେମରେ ମୁଗ୍‌ଧ ଥିଲେ । ହୃଦୟରେ ଭକ୍ତି ସ୍ୱତଃ ବିସ୍ତାରିତ ନ ହେଲେ, ତାଙ୍କ କବିତା ପରି ଲେଖା କେହି ଲେଖିପାରିବ ନାହିଁ । ତାଙ୍କ ପ୍ରଣୀତ "ବସନ୍ତ ଗାଥା" ପୁସ୍ତକ ଏହାର ପ୍ରକୃଷ୍ଟ ଉଦାହରଣ । ତହିଁର ଗୋଟିଏ ମାତ୍ର ପଦ ଏଠାରେ ଉଦ୍ଧାର କରି ଏହି ଉକ୍ତିର ସାରବତ୍ତା ଏଠାରେ ଦେଖାଯାଉ ।

ପଦତଳେ ବସିବାର
କେତେ ବଡ଼ ଅଧିକାର
ଦେଇଛ ଏ ଧାନଗ୍ଥାନ ଜାଟେ ।
ନମିଷେ ବସନ୍ତ ତହିଁ
ଭୂଷିତ ଢାଳଇ ମୁହିଁ
ଜ୍ୟୋତିର୍ମୟ ଅମର କରାନ୍ତେ ।
ହେ ମହାପ୍ରଭୁ ।

ଖଣ୍ଡ କବିତା ମଧ୍ୟରେ ମଧୁସୂଦନଙ୍କ ରଚିତ ପଦ୍ମ ଓ ଧ୍ୟାନ କବିତା ଅତି ଉଚ୍ଚ ଧରଣର ଏବଂ ଦାର୍ଶନିକ ।

ଭକ୍ତ କବି ମଧୁସୂଦନ ଚିରକାଳ ଓଡ଼ିଆଜାତିର ପ୍ରାତଃସ୍ମରଣୀୟ ଓ କୃତଜ୍ଞତାଭାଜନ ହୋଇ ରହିବେ ।

—ଃ୦ଃ—

## ଗଙ୍ଗାଧର ମେହେର

ସମ୍ବଲପୁର ଜିଲ୍ଲାର ବରପାଲି ଗ୍ରାମର ଏକ ସାଧାରଣ ତନ୍ତି ପରିବାରରେ ଗଙ୍ଗାଧର ମେହେରଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ଚୈତନ୍ୟ ଓ ମାତାଙ୍କ ନାମ ସେବକି ।

ଗଙ୍ଗାଧର ପିଲା ଦିନେ ଗୋଟିଏ ଚଟଶାଳୀରେ ଅକ୍ଷର ଶିକ୍ଷା କରିଥିଲେ । ତାଙ୍କ ପିତା ତାଙ୍କୁ ଭାଗବତ ଓ ଛନ୍ଦ ଶିକ୍ଷା ଦେଇଥିଲେ । ସେତେବେଳେ ବରପାଲିରେ ଗୋଟିଏ ମିଡ଼ିଲ ସ୍କୁଲ ଥିଲା । ଗଙ୍ଗାଧର ସେଠାରେ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା ପାଇଥିଲେ । ତାଙ୍କ ପିତା

ଗରିବଲୋକ ଥିବାରୁ ଏବଂ ବସ୍ତ୍ରବୟନ କରି ଜୀବିକା ନିର୍ବାହ କରୁଥିବାରୁ କୁଟୁମ୍ବ ପରିପୋଷଣ ନିମନ୍ତେ ଗଙ୍ଗାଧରଙ୍କୁ ଛାତ୍ରାବସ୍ଥାରେ ମଧ୍ୟ ବୟନ କାର୍ଯ୍ୟରେ ପିତାଙ୍କୁ ସାହାଯ୍ୟ କରିବାକୁ ପଡୁଥିଲା ।

ଗଙ୍ଗାଧର ଜଣେ ସାଧୁ ଓ ସଚ୍ଚରିତ୍ର ଥିଲେ । ତେଣୁ ମିଡ଼ଲ ସ୍କୁଲର ତଦାନୀନ୍ତନ ପ୍ରଧାନ ଶିକ୍ଷକ କଟକ ଜିଲ୍ଲାର ମୂଳବସନ୍ତ ଗ୍ରାମନିବାସୀ ପଣ୍ଡିତ ଘନଶ୍ୟାମ ମିଶ୍ର ତାଙ୍କୁ ବିଶେଷ ଭଲ ପାଉଥିଲେ । ଗଙ୍ଗାଧର ସ୍କୁଲ ଛାଡ଼ିବା ପରେ ପ୍ରଧାନ ଶିକ୍ଷକ ତାଙ୍କୁ ବାହାରିଆ ଛାତ୍ରରୂପେ ଓଡ଼ିଆ ରଘୁବଂଶ, ବୀଜଗଣିତ, କ୍ଷେତ୍ରତତ୍ତ୍ୱ ଓ ସାମାନ୍ୟ ସଂସ୍କୃତ ଶିକ୍ଷା ଦେଇଥିଲେ ।



ଗଙ୍ଗାଧର ମେଧାବୀ ଥିଲେ । ସେ ବ୍ୟକ୍ତିଗତ ଚେଷ୍ଟାରେ ଇଂରାଜୀ ହିନ୍ଦୀ ଓ ବଙ୍ଗଳା ଭାଷା କିଛି କିଛି ଆଲୋଚନା କରିଥିଲେ । ହିନ୍ଦୀ ଓ ବଙ୍ଗଳା ସାହିତ୍ୟରେ ସେ ସ୍ୱାଧ୍ୟାୟ ବଳରେ ଉତ୍ତମ ରୂପେ ପ୍ରବେଶ କରିପାରିଥିଲେ । ବିଶେଷତଃ ସେ ପ୍ରାଚୀନ ଓଡ଼ିଆ ସାହିତ୍ୟର ଅନୁରାଗୀ ଥିଲେ ଏବଂ ତହିଁର ବହୁ ଅନୁଶୀଳନ କରିଥିଲେ ।

ଏହି ଅବସ୍ଥାରେ ତାଙ୍କର କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟର ଗଭୀର ଅନୁଶୀଳନ ନିମନ୍ତେ ଆଗ୍ରହ ହୋଇଥିଲା । ବୈଦେହୀଶ ବିଳାସର ଅନୁକରଣରେ "ରସ ରତ୍ନାକର" ନାମକ ଏକ କାବ୍ୟ ଲେଖିବାକୁ ତାଙ୍କର ପ୍ରବୃତ୍ତି ଜାତ ହୋଇଥିଲା । ଏହି କାବ୍ୟର ଆଦ୍ୟପ୍ରାନ୍ତ ଉଭୟ 'ର' ଅକ୍ଷର ବିଶିଷ୍ଟ ଥିଲା ।

"ରସିକ ବୁଧଜନକର ରସେ ଶତ ଦଣ୍ଡ କର
ରମା ନାମେ ସୁତା ଥିଲା ବଳସୁତର ।"

ଏହି କାବ୍ୟ ପାଠକରି ବରପାଲିର ତଦାନୀନ୍ତନ ଯୁବରାଜଙ୍କ ଗୃହ-ଶିକ୍ଷକ ଶ୍ରୀ ସୂର୍ଯ୍ୟକୁମାର ମିଶ୍ର ଆଧୁନିକ ଧରଣରେ କବିତା ଲେଖିବାକୁ ଗଙ୍ଗାଧରଙ୍କୁ ପରାମର୍ଶ ଦେଇଥିଲେ । ତାଙ୍କ ପ୍ରେରଣାରେ ଗଙ୍ଗାଧର ସଂସ୍କୃତ ଛନ୍ଦରେ "ଅହଲ୍ୟାସ୍ତବ" ପ୍ରଣୟନ କରିଥିଲେ ଏବଂ କବିବର ରାଧାନାଥଙ୍କ ନିକଟକୁ ତାହା ପଠାଇଥିଲେ । ରାଧାନାଥ ଗଙ୍ଗାଧରଙ୍କ କୃତିତ୍ୱ ଉପଲବ୍ଧି କରି ସଂସ୍କୃତ ଛନ୍ଦ ପରିବର୍ତ୍ତେ ଓଡ଼ିଆ ଛନ୍ଦରେ କବିତା ରଚନା କରିବାକୁ ପରାମର୍ଶ ଓ ପ୍ରଭୂତ ପ୍ରେରଣା ଦେଇଥିଲେ । ସେହି ଦିନଠାରୁ ଗଙ୍ଗାଧର ଆଧୁନିକ ଧରଣର କାବ୍ୟ ପ୍ରଣୟନରେ ବ୍ରତୀ ହେଲେ ଏବଂ ପ୍ରାୟ ଏକ ବର୍ଷ ପରେ 'ଇନ୍ଦୁମତୀ' କାବ୍ୟ ପ୍ରଣୟନ ଓ ପ୍ରକାଶ କରିଥିଲେ । ବଣର ମାଳତୀ ଫୁଲର କେହି ଯତ୍ନ କରେ ନାହିଁ । ଜନ୍ମତଃ କବି ଗଙ୍ଗାଧରଙ୍କ ପ୍ରତିଭା ସ୍ୱତଃ ବିକଶିତ ହୋଇଥିଲା ।

ଗଙ୍ଗାଧର ବାଲ୍ୟକାଳରୁ ଶାନ୍ତ, ସରଳ, ଦୃଢ଼ମନା ଓ ଧର୍ମାନୁରାଗୀ ଥିଲେ । ସେ ପିତାମହଙ୍କ ସଙ୍ଗେ ପ୍ରାତରୁ ସ୍ନାନ କରି ପ୍ରତ୍ୟହ ଜଗନ୍ନାଥ ଦର୍ଶନ କରୁଥିଲେ । ସନ୍ଧ୍ୟାରେ ନାମ ସଙ୍କୀର୍ତ୍ତନ ଓ ଗୃହରେ ଭାଗବତ ପାଠ କରୁଥିଲେ । ରାମାୟଣାଦି ପୁରାଣପାଠ ଶ୍ରବଣରେ ତାହାଙ୍କର ଐକାନ୍ତିକ ଶ୍ରଦ୍ଧା ଓ ଆଗ୍ରହ ଥିଲା । ସତ୍ୟ ତାଙ୍କ ଜୀବନର ପରମ ବ୍ରତ ଓ ଲକ୍ଷ୍ୟ ଥିଲା । ଏହିପରି ତାଙ୍କ ଚରିତ୍ର ଅତ୍ୟନ୍ତ ଦୃଢ଼ ଭାବରେ ଗଠିତ ହୋଇଥିଲା । ବାଲ୍ୟକାଳରେ ଆଚରିତ ତାଙ୍କର ଏପ୍ରକାର ଧର୍ମରୁଚି, ନିଷ୍ଠା, ଶିକ୍ଷା କ୍ରମେ ଅଭ୍ୟାସରେ ପରିଣତ ହୋଇଥିଲା ଏବଂ ସେ ଜୀବନରେ କେବେ ହେଲେ ନୈତିକତାରୁ ସ୍ଖଳିତ ହୋଇ ନ ଥିଲେ । ସେହି ନୈତିକ ଉଚ୍ଚ ଆଦର୍ଶ ଓ ମାନବିକତା ତାହାଙ୍କ କବିତାରେ ପରିସ୍ଫୁଟ ହୋଇଅଛି ଏବଂ ତାହା ହିଁ ତାଙ୍କ କବିତାର ମହତ୍ତ୍ୱ ବଢ଼ାଇଛି ।

ମାନବର ଦୁଇଟି ବିଭବ ଅଛି, ଗୋଟିଏ ମୃଣ୍ମୟ, ଅପରଟି ଚିନ୍ମୟ । ବୈଷୟିକ ଉନ୍ନତି ଏହାର ମୃଣ୍ମୟ ବିଭବର ପରିପୋଷକ । ବୈଷୟିକ ଉନ୍ନତି ଓ ମୃଣ୍ମୟ ବିଭବ ଉଭୟ କ୍ଷଣଭଙ୍ଗୁର ଓ ଅସ୍ଥାୟୀ । ତାହା ମାନବର ଐହିକ ତଥାକଥିତ ସୁଖର ବର୍ଦ୍ଧକ ହେଲେହେଁ, ଆତ୍ମାର ବା ଚିନ୍ମୟ ବିଭବର ଶାନ୍ତିବିଧାନ କରିପାରେ ନାହିଁ । ବୈଷୟିକ ଉନ୍ନତି

ଯେତେ ଉଚ୍ଚ ହେଲେ ମଧ୍ୟ ମାନବ ଦେହିରୁ ପ୍ରକୃତ ସୁଖ ପାଇପାରେ ନାହିଁ, କାରଣ ସେହି ମିଥ୍ୟା ସୁଖ ମଧ୍ୟରେ ମନର ପ୍ରକୃତ ଆନନ୍ଦ ପାଏ ନାହିଁ । ନୈତିକ ଚୈତନ୍ୟ ଚିନ୍ମୟ ଶକ୍ତିର ଜାଗରଣ ବା ପ୍ରକାଶ ପ୍ରକୃତ ସୁଖର ସ୍ୱରୂପ । ସେହି ଚିନ୍ମୟର ଆତ୍ମପ୍ରକାଶ ଓ ଆତ୍ମୋପଲବ୍ଧି ମନୁଷ୍ୟର କାମ୍ୟ । ଅନ୍ୟ କିଛି ନୁହେଁ । ଏହି ଚିନ୍ମୟର ଆତ୍ମୋପଲବ୍ଧି ମାନବର, ମାନବ ସମାଜର ଉଚ୍ଚତାର ମାନଦଣ୍ଡ । ଚିନ୍ମୟର ଆତ୍ମୋପଲବ୍ଧି ସମ୍ଭବ ହେଲେ, ମୃଣ୍ମୟର ପରିପୋଷକ ଗୁଣର ଅଭାବରେ ମଧ୍ୟ ମାନବ ପ୍ରକୃତ ସୁଖର ଅଧିକାରୀ ହୁଏ । ଗଙ୍ଗାଧର ବୈଷୟିକ ଉନ୍ନତିର ଅଭାବରେ ଚିନ୍ମୟ ସୁଖ ଆନନ୍ଦର ଅଧିକାରୀ ଥିଲେ । ସେହି ଭାବ ତାଙ୍କ କବିତାରେ ଫୁଟାଇଛନ୍ତି । ଯେଉଁ କାବ୍ୟ କବିତା ମାନବର ଚିନ୍ମୟଶକ୍ତିକୁ ଜାଗ୍ରତ କରେ ତାକୁ ପ୍ରେରଣା ଦିଏ, ସେହି ଶକ୍ତିକୁ "ଆନନ୍ଦମୟ" କରେ, ତାହାହିଁ କବିତା । ଗଙ୍ଗାଧରଙ୍କ କାବ୍ୟକବିତା ଏହି ଶ୍ରେଣୀର । ତାକୁ ଯେତେ ପଢ଼ୁଥିଲେ ମଧ୍ୟ ସର୍ବଦା ନୂତନ ହୋଇ ରହିଥିବ, ସର୍ବଦା ପାଠକଙ୍କୁ ଆନନ୍ଦ ଦେଉଥିବ । ତାହାର ବିଲୟ ନାହିଁ । ଗଙ୍ଗାଧର ଅମର ।

କବି ଗଙ୍ଗାଧରଙ୍କ ନୈତିକ ଆଦର୍ଶ କେତେ ଉଚ୍ଚକୋଟିର, ସେ ଦାର୍ଶନିକ ତତ୍ତ୍ୱକୁ କେତେ ସରଳ ଓ ଜୀବନ୍ତ ଭାଷାରେ ପ୍ରକାଶ କରିପାରନ୍ତି, ତାଙ୍କ ଆତ୍ମା ଓ ମନନ ପାର୍ଥିବ ସଂକୀର୍ଣ୍ଣତାର କେତେ ଉର୍ଦ୍ଧ୍ୱରେ ଏବଂ ସେ ଅବତାରବାଦ ଓ ଏକେଶ୍ୱରବାଦ ଉଭୟକୁ କିପରି ଉପଲବ୍ଧି କରିଛନ୍ତି, ତାହା ଜଣାଇ ଦେବା ନିମନ୍ତେ ଏଠାରେ ତାଙ୍କର ଗୋଟିଏ ମାତ୍ର କବିତା ଉଦ୍ଧାର କରିଯାଉଅଛି—

ବିଶ୍ୱଜୀବନ ହେ ତୁମ୍ଭଙ୍କୁ କରୁଣାସିନ୍ଧୁ
ବୋଲିବାକୁ ମନ ବଳୁନାହିଁ
ଯେଣୁ ସିନ୍ଧୁ ତୁମ୍ଭ କୃପାବିନ୍ଦୁ ।

ତୁମ୍ଭ ଭଜନରେ ହେବନାହିଁ ନାଥ ମାଳା ଜପିବାକୁ ବାଧ୍ୟ,
କୋଟି କୋଟି ଗ୍ରହ କଣ୍ଠି ସେ ମାଳାର କେ ଜପ କରିବ ସାଧ୍ୟ ।

ଦେଇ ନାହିଁ ବଳ ପଦଧୂଳି ଦେବପାରିବ ନାହିଁ ମୋ ମୁଣ୍ଡ;
କୋଟି କୋଟି ରବି ଧୂଳିରୂପେ ତୁମ୍ଭ ପାଦେ ହୋଇଛନ୍ତି ଲୁଣ୍ଠ ।
ହୃଦୟର କଥା ଜାଣିବାକୁ ଅଛି ତୁମ୍ଭର ଅସୀମ ଶକ୍ତି,
ସେତିକି ଦେଖିବ ଯେତିକି ଅଛି ମୋ ହୃଦେ ତୁମ୍ଭ ପ୍ରତି ଭକ୍ତି ।
ଥାପିବାକୁ ତୁମ୍ଭ ମୂରତି ମୋ କ୍ଷୁଦ୍ର ହୃଦୟରେ ନାହିଁ ସ୍ଥାନ,
ସର୍ଷପଗର୍ଭେ ରହି କି ପାରିଇ ହିମାଳୟ ସାନୁମାନ ।
କି ଦେଇ ପୂଜିବି ଯାହା ମୁଁ ଦେଖୁଛି ସବୁ ତୁମ୍ଭର ପ୍ରସାଦ,
ଯାହା ପରସାଦ ତାଙ୍କୁ ଅରପିଲେ ହେବ ସିନା ଅପରାଧ ।
ମୁଁ କାର ମାତର ମୋର ନୁହେ ବୋଲି କହିବାକୁ ନାହିଁ ବାଟ,
ଦୂରୁ ଶ୍ରୀଚରଣେ ଅର୍ପଣ କରୁଛି ଦେଖି ତା ବିଶ୍ୱସମ୍ରାଟ ।

ଗଙ୍ଗାଧରଙ୍କ ଶ୍ରେଷ୍ଠ କାବ୍ୟ ମଧ୍ୟରେ ନିମ୍ନଗୁଡ଼ିକ ପ୍ରଧାନ, କିନ୍ତୁ ତାଙ୍କ ରଚିତ ପ୍ରତ୍ୟେକ କାବ୍ୟ ଗୋଟିଏ ଗୋଟିଏ ରତ୍ନ; କୌଣସିଟି ନିମ୍ନ ଶ୍ରେଣୀର ନୁହେ । ସେ ଏପରି ସିଦ୍ଧହସ୍ତ ଶିଳ୍ପୀ ଥିଲେ ଏବଂ ତାଙ୍କଠାରେ ଏପରି ଯାଦୁ ଶକ୍ତି ଥିଲି ଯେ, ସେ ଯେଉଁଥିରେ ହାତ ଦେଇଛନ୍ତି, ତାହା ସୁନ୍ଦର ହୋଇଛି ।

୧ । ତପସ୍ୱିନୀ, ୨ । ପ୍ରଣୟବଲ୍ଲରୀ, ୩ । କୀଚକବଧ, ୪ । ଅର୍ଘ୍ୟଥାଳୀ ଓ ୫ । ଇନ୍ଦୁମତୀ ।

ଗଙ୍ଗାଧର ୧୮୬୨ରେ ଜନ୍ମ ହୋଇଥିଲେ ଏବଂ ୧୯୨୪ରେ ପାର୍ଥିବ ଲୀଳା ଶେଷ କରିଥିଲେ ।

—o—

# ଫକୀରମୋହନ ସେନାପତି

ଫକୀରମୋହନଙ୍କ ଘର ବାଲେଶ୍ୱର ସହରର ମଲ୍ଲିକାଶପୁରରେ । ସେ ପ୍ରଥମେ ଗୁରୁଶାଳୀରେ ପଢ଼ି ପରେ ବାଲେଶ୍ୱର ମିଶନ ସ୍କୁଲରେ ପଢ଼ିଲେ । ସେ ସ୍କୁଲର ସାହେବ ତାଙ୍କ ଆଚରଣରେ ଖୁସି ହୋଇ ତାଙ୍କୁ ତିନ ଟଙ୍କା ଦରମାରେ ଗୋଟିଏ ମାଷ୍ଟରୀ କାମ ଦେଲେ । ସେହି କାମକରି ସେ ନିଜେ ନିଜେ ପଢ଼ୁଥାନ୍ତି । ଶେଷରେ ସେ ସେହି ସ୍କୁଲର ହେଡ୍ ପଣ୍ଡିତ ହେଲେ । ସେତେବେଳେ ବିମ୍ସ ବୋଲି ଜଣେ ସାହେବ ହାକିମ ଥାନ୍ତି । ସେ ଫକୀରମୋହନଙ୍କ କାମରେ ଖୁସି ହୋଇ ତାଙ୍କୁ ନୀଳଗିରିର ଦେବାନ କରାଇଦେଲେ । ଏହାପରେ ଫକୀରମୋହନ ଓଡ଼ିଶାର ଅନେକ ଗଡ଼ଜାତରେ ଦେବାନ ଓ ମେନେଜର କାମ କଲେ ।



( ଫକୀରମୋହନ )

ଫକୀରମୋହନ ଜଣେ ଉଚ୍ଚ-ଧରଣର କବି ଏବଂ 'ଅବସର-ବାସରେ', 'ବୌଦ୍ଧାବତାର,' 'ଉତ୍କଳ ଭ୍ରମଣ' ପ୍ରଭୃତି ଆଦର୍ଶ କବିତା ଗ୍ରନ୍ଥ ପ୍ରଣୟନ କରିଛନ୍ତି । ତାଙ୍କୁ ଓଡ଼ିଶାର ବ୍ୟାସକବି ବୋଲି କୁହାଯାଏ । ହେଲେହେଁ ଉପନ୍ୟାସ ଲେଖାରେ ସେ ନିଜ ବିଶିଷ୍ଟତା ପ୍ରତିଷ୍ଠା କରି ଯାଇଛନ୍ତି । ତାଙ୍କ ପୂର୍ବେ ଓଡ଼ିଆ ଭାଷାରେ ଉପନ୍ୟାସ ନ ଥିଲା । ସେ ପ୍ରଥମେ ସେହି ପ୍ରୟାସ କରିଥିଲେ ଏବଂ ମୌଳିକ ଉପନ୍ୟାସମାନ ଲେଖି ସେଥିରେ ଓଡ଼ିଶାର ଜାତି ଓ ବ୍ୟକ୍ତିଚରିତ୍ର ନିଖୁଣ ଭାବରେ ଫୁଟାଇ ପାରିଛନ୍ତି । ତାଙ୍କ ପରି ଉପନ୍ୟାସ ରଚନା ଏପର୍ଯ୍ୟନ୍ତ ଓଡ଼ିଶାରେ କେହି କରିପାରିନାହାନ୍ତି । ସର୍ବୋପରି, ତାଙ୍କ ଉପନ୍ୟାସର ଭାଷା ଅତି ସରଳ ଓ ତାହା ଜନଭାଷା । ଏଥି ସକାଶେ ଫକୀରମୋହନଙ୍କୁ ଓଡ଼ିଆ ଉପନ୍ୟାସର ଜନ୍ମଦାତା ବୋଲି କହିବାକୁ ହୁଏ । ଫକୀରମୋହନ ଏ ଦିଗରେ ଓଡ଼ିଆ ସାହିତ୍ୟରେ ପଥ-

ପ୍ରଦର୍ଶକ ଏବଂ ଚିରକାଳ ଅମର ହୋଇ ରହିବେ । ତାଙ୍କ ଲିଖିତ ଉପନ୍ୟାସ ମଧ୍ୟରେ 'ମାମୁଁ', 'ପ୍ରାୟଶ୍ଚିତ୍ତ', 'ଲଛମା', 'ଛମାଣ ଆଠଗୁଣ୍ଠ' ପ୍ରଭୃତି ପ୍ରଧାନ । ଫକୀରମୋହନ ଓଡ଼ିଶାରେ ସବୁ ପ୍ରଥମେ ଆତ୍ମଜୀବନୀ ଲେଖିଥିଲେ ଏବଂ ତାଙ୍କ ଆତ୍ମଜୀବନୀ ଅତି ସୁନ୍ଦର ଓ ଶିକ୍ଷାପ୍ରଦ ହୋଇଛି ।

ଫକୀରମୋହନ ୧୮୪୩ ଖ୍ରୀଷ୍ଟାବ୍ଦରେ ଜନ୍ମ ହୋଇଥିଲେ ଏବଂ ୧୯୧୮ ଖ୍ରୀଷ୍ଟାବ୍ଦରେ ଇହଲୀଳା ସାଙ୍ଗ କରିଥିଲେ ।

—ଃ୦ଃ—

ମୁଦ୍ରଣ—ନବବର୍ତ୍ତନ ପ୍ରିଣ୍ଟର୍ସ, ଝାଞ୍ଜିରି ମଙ୍ଗଳା, କଟକ-୯